# କିସ ପୁଣି ଦେଖା ନ ଯାଏ

ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ



କିସ ପୁଣି ଦେଖା ନ ଯାଏ—ଲେଖକ : ଡଃ ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୨, ପ୍ରଥମ ପ୍ରକାଶ : ୧୯୯୬, ମୁଦ୍ରଣ : ଜଗନ୍ନାଥ ପ୍ରିଣ୍ଟର୍ସ, ମେରିଆବଜାର, କଟକ-୧



**KISA PUNI DEKHA NA JAE**—Author : Dr. Deviprasanna Pattanaik, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), Printer : Jagannath Printers, Meria Bazar, Cuttack-1.

First Edition : 1996

Price : Rs. **30**

ISBN 81-7401-165-X

# ମୁଖବନ୍ଧ

"କସ ପୁଣି ଦେଖାନଯାଏ" ଲଘୁକଥାର ସଂକଳନ । ସଂସାର ବଡ଼ ବିଚିତ୍ର । ଏଇ ବିଚିତ୍ର ସଂସାରରେ ଅସମ୍ଭବ କଥା ହିଁ ଆମକୁ ଚକିତ କରିଥାଏ । ସମ୍ଭବ ଓ ଅସମ୍ଭବ କଥାର ମିଶାମିଶିରେ ଏଇ "କସ ପୁଣି ଦେଖାନଯାଏ"ର ସୃଷ୍ଟି ।

ଗପ ଜରିଆରେ ଲୋକଶିକ୍ଷା ଭାରତର ପାରମ୍ପରିକ ସ୍ରୋତ । ହିତୋପଦେଶର କଥା ଜରିଆରେ ରଜାପୁଅ ଛ'ମାସ ଭିତରେ ରାଜ୍ୟଶାସନର କଠିନତତ୍ତ୍ୱ ଶିଖିଥିଲେ । ଏହି ଗଳ୍ପଗୁଡ଼ିକର ସେପରି ଦାବି ନାହିଁ । ତେବେ ଲୋକେ ଏହା ପଢ଼ି ଆପଣା ଆପଣା ଭିତରେ କଥାବାର୍ତ୍ତା ହେଲେ ମୁଁ ମୋର ଶ୍ରମ ସାର୍ଥକ ମଣିବି ।

ଏଥିରୁ କେତେକ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । ମୁଁ ସେହି ପତ୍ରପତ୍ରିକାର ସମ୍ପାଦକମାନଙ୍କ ନିକଟରେ ଆପଣା ଋଣ ସ୍ୱୀକାର କରୁଛି ।

ଭୁବନେଶ୍ୱର **ଦେବୀପ୍ରସନ୍ନ ପଟ୍ଟନାୟକ**

# ଅନୁକ୍ରମ

# କଏ ପୁଣି ଦେଖା ନ ଯାଏ

କଏ ପୁଣି ଦେଖା ନ ଯାଏ... ? ଆମେ ସେଇ ଭାଗ୍ୟବାନ୍ ପିଢ଼ିର ଲୋକ ଯିଏ ଭାରତ ସ୍ୱାଧୀନ ହେବାର ଦେଖିଲୁ । ପୁଣି ଆମେ ସେଇ ଭାଗ୍ୟହୀନ ପିଢ଼ିର ଲୋକ ଯିଏ ଦେଶ ଗୋଲାମି ଆଡ଼କୁ ଯିବାର ଦେଖୁଛୁ । ଯେଉଁମାନେ ସ୍ୱାଧୀନତା ପରର ପିଲା, ସେମାନେ ତ୍ୟାଗ, ବଳିଦାନ କଥା ଶୁଣିନାହାନ୍ତି ।

ସେଦିନ ଘନେଶଦାଙ୍କ ସାଙ୍ଗରେ କଥାବାର୍ତ୍ତା ହେଉଥିଲା । ଘନେଶଦାଙ୍କ ବୟସ ଏକାଅଶୀ । ସୂର୍ଯ୍ୟସେନଙ୍କ ସାଙ୍ଗରେ ଚଟ୍ଟଗାଙ୍ଗ ଅସ୍ତ୍ରାଗାର ଲୁଣ୍ଠନ ମାମଲାରେ ଜଡ଼ିତ ହୋଇ ସେ ପାଞ୍ଚବର୍ଷ କଳାପାଣିରେ କଟାଇଛନ୍ତି । ଲୋକେ ଆଜି ସୂର୍ଯ୍ୟସେନଙ୍କ ଫାଶୀ କଥା ଭୁଲିଗଲେଣି । ପଛକଥା ଭାବିବାକୁ ବେଳ କାହାର ଅଛି ? ଅଥଚ ଦେଶର ଭବିଷ୍ୟତ ଏଇ ଅତୀତ ସହିତ ଘନିଷ୍ଠ ଭାବରେ ସଂପୃକ୍ତ । ଯେଉଁମାନେ ଏ ପୃଥିବୀରେ ଗରିବ ହୋଇଛନ୍ତି ସେମାନେ କାହିଁକି ଗରିବ ହୋଇଛନ୍ତି ଓ ଯେଉଁମାନେ ଏ ପୃଥିବୀରେ ଧନୀ ହୋଇଛନ୍ତି ସେମାନେ କାହିଁକି ଓ କିପରି ଧନୀ ହୋଇଛନ୍ତି, ଏଇ କଥାର ଜବାବ ଦେଲେ ଦେଶର ବର୍ତ୍ତମାନ ଓ ସ୍ଥିତିକୁ ସୁଧାରିବାକୁ ଭବିଷ୍ୟତ କର୍ମପନ୍ଥା ସ୍ପଷ୍ଟ ହେବ । ଅଥଚ ଏ କଥା ପ୍ରତି କାହାର ଖିଆଲ ନାହିଁ । ସମ୍ପନ୍ନ ଜୀବନର ସ୍ୱପ୍ନ ଆମକୁ ଏମିତି ଘାରିଛି ଯେ ଆମେ ଅନ୍ଧାଧୁନ୍ଧ ଧାଇଁଛୁ ।

ହଁ, ଘନେଶଦା କହୁଥିଲେ ତାଙ୍କ ବାପା ସମ୍ପନ୍ନ ଥିଲେ । ଗୋଟିଏ ପୁଅ । କଲିକତାରେ ଡାକ୍ତରୀ ପଢ଼େଇ ବଡ଼ ଡାକ୍ତର କରିବାର ସ୍ୱପ୍ନ ଦେଖୁଥିଲେ । ସିଏ ମାଷ୍ଟରଦାଙ୍କ ଦଳରେ ଯୋଗ ଦେଲେ । ତାଙ୍କ କକା ବଡ଼ ବ୍ରିଟିଶ-ଭକ୍ତ । ସିଏ କହୁଥିଲେ ତୋ ପୁଅ ଯୋଗୁଁ ଆମେ ମୁଣ୍ଡ ଟେକି ଚାଲିପାରୁନାହୁଁ । ଏମିତି କହିବାରେ ଯେତେବେଳେ ଅସହଣି ଅବସ୍ଥାର ସୃଷ୍ଟି ହେଲା, ଦିନେ ତାଙ୍କ ମା' ଜବାବ ଦେଲେ, ମୋ ପୁଅ କଣ ମଦପିଇ ଦାଣ୍ଡରେ ଗଡ଼ୁଚି ନା ପିଅବୋହୂଙ୍କ ସାଙ୍ଗରେ ପଳେଇଚି ଯେ ତମ ମୁଣ୍ଡ ତଳକୁ ହେଇ ଯାଉଚି ? ଘନେଶଦା ପୁଣି କହିଲେ ମୋ ଭାଇଙ୍କ ପୁଅ ଦିନେ ବାହାରେ ବୋମା ଫୁଟିବା ଶବ୍ଦ ଶୁଣି ମୋ ସାଙ୍ଗରେ ବାହାରକୁ ବାହାରିଲା ବେଳେ ମା' କହିଲେ, ତୁ

ବାହାରକୁ ଯା'ନା । ବିପଦ ଆପଦ ଅଛି । ଘନେଶଦା ବୁଲିପଡ଼ି କହିଲେ କାଲି ଯଦି ତୋ ଘରେ ବୋମା ଫୁଟେ କି ଗୁହାଜାକି ହୁଏ, ତେବେ ସାଇ ପଡ଼ିଶା ଲୋକେ ଠିଆ ନୋହିଲେ ତମେ କପାଳକୁ ନିନ୍ଦିବ ସିନା ? ଏଇ ହେଉଛି ମୋ ମା' ଆଉ ତୋ ଭିତରେ ଫରକ ।

ଘନେଶଦାଙ୍କ ସେଇ ପୁରୁଣା ଜର୍ମାନୀ ଗଳ୍ପ । ସେଠି ପାଠପଢ଼ି ଚାକିରି କରି ଗୋଟିଏ ଜର୍ମାନୀ ଝିଅ ବାହା ହୋଇ ଆସିଲି । ଦିନେ ଘନେଶଦା ସେଇ ଝିଅକୁ ପଚାରିଲେ ତୁ ଭାରତୀୟ ବାହାହେଲୁ କାହିଁକି ? ଶ୍ୱଶୁରଙ୍କ ଏଇ ପ୍ରଶ୍ନରେ ଝିଅଟି ମୁହୂର୍ତ୍ତେ ଅବାକ୍ ହୋଇଗଲା । ତା'ପରେ ଜବାବ ମିଳିଲା 'ମୁଁ ଆର୍ଯ୍ୟ ବାହା ହୋଇଛି' । ଘନେଶଦା ଭାଉଜଙ୍କୁ କହିଲେ, ପରାଧୀନ ଭାରତୀୟଙ୍କୁ ଆର୍ଯ୍ୟ କହି କୌଣସି ଜର୍ମାନୀ ସ୍ତ୍ରୀ ବାହାହେବା ଚିନ୍ତା କରିଯାଇ ପାରିବନାହିଁ । ଆମେ ଯେ ଲଢ଼େଇ କରି ସ୍ୱାଧୀନତା ଆଣିଲୁ ତାରି ପରିଣାମ ହେଉଛି ଭାରତୀୟଙ୍କର ଏଇ ପରିଚୟ । ପ୍ରକୃତ ପକ୍ଷରେ ସ୍ୱାଧୀନ ଭାରତ, ଗାନ୍ଧି ଭାରତର ଗୌରବ ଏତେ ବେଶୀ ଯେ, ଯେଉଁମାନେ ସ୍ୱାଧୀନତାର ବିରୋଧ କରୁଥିଲେ ସେମାନଙ୍କ ପିଲାଏ ମଧ୍ୟ ବିଦେଶରେ ମୁଣ୍ଡଟେକି ଭାରତୀୟ କହିବାର ଗର୍ବ ଅନୁଭବ କଲେ ।

ପିଲାଙ୍କ ପାଠପଢ଼ା କଥା ପଡ଼ିଲା । ମୁଁ କହିଲି ମୋ ପିଲାଙ୍କୁ କନଭେଣ୍ଟରେ ପଢ଼େଇବା ମୋ ଶ୍ୱଶୁର ଘରର ଇଚ୍ଛା । ମୁଁ ଯାହାର ବିରୋଧୀ । ମୋ ପିଲାଏ ଶାନ୍ତି ନିକେତନରେ ବଙ୍ଗଳା, ପୁନାରେ ମରାଠି, ହିନ୍ଦୀ ଆଉ କର୍ଣ୍ଣାଟକରେ କନ୍ନଡ଼ ମାଧ୍ୟମରେ ପଢ଼ିଲେ । ସବୁ ଜାଗାରେ ସେଇ ଭାଷାମାନଙ୍କରେ ପ୍ରଥମ ଦ୍ୱିତୀୟସ୍ଥାନ ହାସଲ କଲେ । ପିଲାଏ ଦୁର୍ବଳ ହେବା ବଦଳରେ ଅଧିକ ଟାଣ ହେଲେ । ଘନେଶଦା କହିଲେ, ଆମେ ସବୁ ପିଲାଙ୍କୁ ଭଲ କରିବାରେ ଆମ ପିଲାଙ୍କର ଭଲ ଦେଖୁଥିଲୁ । ଆମେ ନିଜେ ଆପଣା ପାଇଁ ଓ ଆପଣା ପିଲାଙ୍କପାଇଁ ଭଲ କରିବାକୁ ଯାଇ ସମସ୍ତଙ୍କ କଥା ଭୁଲିଯାଇଚୁ । ଫଳରେ ସମସ୍ତଙ୍କ ସାଙ୍ଗରେ ଆମ ପିଲାଏ ବି ଭୋଗୁଛନ୍ତି । ଯେଉଁମାନେ ଗାନ୍ଧି ଆପଣା ପିଲା ପାଇଁ କିଛି କଲେନାହିଁ ବୋଲି ଗାଳି ଦେଉଛନ୍ତି, ସେମାନେ ଭୁଲି ଯାଉଛନ୍ତି ଯେ ଗାନ୍ଧି ଖାଲି ଆପଣା ପିଲାଙ୍କ କଥା ଭାବିଥିଲେ ସେମାନଙ୍କୁ ଇଂରାଜୀ ଶିକ୍ଷା ଦେଇ ବଡ଼ ମଣିଷ କରିପାରିଥାନ୍ତେ । ଗାନ୍ଧି ସବୁ ପିଲାଙ୍କ କଥା

ଭାବୁଥିଲେ । ନୟୀ ତାଲିମ ଶିକ୍ଷା କଥା କହୁଥିଲେ । ସମସ୍ତଙ୍କ ହିତରେ ଯାଇ ଯେ ଆପଣାର ଭଲ, ଏକଥା ଆମେ ଭୁଲିଗଲୁଣି ।

ରାଜନୈତିକ ନେତାମାନଙ୍କର ଗାଡ଼ି ଚଳାଉଥିବା ଜଣେ ଡ୍ରାଇଭରଙ୍କୁ ମୁଁ ଥରେ ପଚାରିଥିଲି, ସେକାଳ ଓ ଏକାଳ ନେତାଙ୍କ ଭିତରେ ପାର୍ଥକ୍ୟ କଣ ? ସିଏ କହିଲା, ରଘୁକୁଳ ରୀତି ସଦା ଚଳି ଆୟୀ । ପ୍ରାଣ ଯାଇ ପର ବଚନ ନଯାଇ । ସେକାଳ ନେତାଙ୍କର ବଚନର ମୂଲ୍ୟ ଥିଲା । ଏକାଳ ନେତାଙ୍କର ବଚନର ମୂଲ୍ୟ ନାହିଁ । ପ୍ରକୃତ ପକ୍ଷରେ ବର୍ତ୍ତମାନ ସାଧାରଣ ଭାବରେ ଲୋକଙ୍କର କଥନ ଓ କରଣି ଭିତରେ ଫାଙ୍କ ଏତେ ବଢ଼ିଯାଇଛି ଯେ ସେଇ ଫାଙ୍କକୁ ଯୋଡ଼ିବା ସମ୍ଭବ ନୁହେଁ । ଯେଉଁମାନେ ଆପଣା ପିଲାଙ୍କ ପାଇଁ ଇଂରାଜୀ ଶିକ୍ଷା ବ୍ୟବସ୍ଥା କରି ଅପର ପିଲାଙ୍କପାଇଁ ମାତୃଭାଷା ଶିକ୍ଷାର ଆହ୍ୱାନ ଦେଉଛନ୍ତି ସେମାନେ ଲୋକ ଆଖିରେ ତ ତଳକୁ ପଡ଼ିଯାଉଛନ୍ତି, ଆପଣାର ବି କ୍ଷତି କରୁଛନ୍ତି । କଥା ଓ କାର୍ଯ୍ୟ ଭିତରେ ବ୍ୟବଧାନ ଦୂର ନହେଲେ ଯେ ଦେଶର ଭବିଷ୍ୟତ ଅନ୍ଧାର, ଏଥିରେ ସନ୍ଦେହ କରିବାର କଣ ଅଛି ?



# ଆମ ସ୍କୁଲ

ଆମ ଉପରେ ସ୍କୁଲର ପ୍ରଭାବ ଏତେ ବେଶି ଯେ ଆମେ ସ୍କୁଲକୁ ଆଧୁନିକ ଜୀବନର ଅବଶ୍ୟମ୍ଭାବୀ ଅଙ୍ଗ ବୋଲି ଧରିନେଇଛୁ । ସ୍କୁଲ ବିନା ଜୀବନ ଅସମ୍ଭବ ବୋଲି ଆମେ ମାନି ନେଉଛୁ । ମା' ପେଟରୁ ଜନ୍ମନେଲେ ଯାଇ ପିଲା ବୋଲେଇଲା ପରି ସ୍କୁଲରୁ ନ ବାହାରିଲେ ଆଧୁନିକ ଜୀବନ ସମ୍ଭବ ନୁହେଁ ବୋଲି ଆମେ ଧରିନେଇଛୁ । କିନ୍ତୁ ସ୍କୁଲ କ'ଣ ? ସ୍କୁଲ ହେଉଛି ଅଜ୍ଞାତ ଭବିଷ୍ୟତର ପ୍ରତିଶ୍ରୁତିର ସଙ୍କେତ । ଏହା ଜ୍ଞାନ ସାଧନାର ପୀଠ ନୁହେଁ କି ଶିକ୍ଷାର କେନ୍ଦ୍ର ନୁହେଁ । ଠିକ୍‌ଏ ତନେଇ ଦେଖିଲେ ଆପଣା ସମାଜ ସଂସ୍କୃତି ଓ ପରମ୍ପରାଠାରୁ ଦୂରେଇ ନେବା ବ୍ୟତୀତ ଆଧୁନିକ ସ୍କୁଲର କୌଣସି ଅବଦାନ ନାହିଁ ।

ଆମ ଗାଁ ସମାଜ କଥା ଦେଖାଯାଉ । ଯିଏ ଚାରିକ୍ଲାସ ପଢ଼ିଲା ସିଏ ଚାଷବାସ କିମ୍ବା ପାରିବାରିକ ବୃତ୍ତି କରିବାକୁ ଅମଙ୍ଗ । ଗାଁର ଚାଳଘର ବସତି ଭିତରେ ସ୍କୁଲର ପକ୍‌କା ଘର ପଟିବନ୍ଧା ବୁଢ଼ାଆଙ୍ଗୁଠି ପରି ଅଲଗା ବାରି ହେଲାପରି ଏଇ ସ୍କୁଲରେ ଚାରିକ୍ଲାସ ପଢ଼ିଥିବା ବାବୁ ଗାଁ ସମାଜରୁ ବାରି ହୋଇ ଦିଶନ୍ତି । ଦଶ କ୍ଲାସ ପଢ଼ିଲେ ତ କଥା ନାହିଁ । ସହରର ବଡ଼ କାମକୁ ସାନ ଆଉ ସାନ କାମକୁ ବଡ଼ ହେଇ ଏମାନେ ବେକାର ହୋଇ ବୁଲନ୍ତି ।

ସ୍କୁଲର ଏଇ ଦୁରବସ୍ଥା ପାଇଁ ଆମେ ସଭିଏଁ ଦାୟୀ । ପ୍ରଥମେ ଯୋଜନା କଲା ଲୋକେ । ପିଲାଏ ଏକ କିଲୋମିଟର ଚାଲିବା ଉଚିତ ନୁହେଁ । ତେଣୁ ଏକ କିଲୋମିଟର ଭିତରେ ସ୍କୁଲ କରିବାକୁ ହେବ । ଗାଁ ପିଲାଏ କଣ ଚାଲିବାରେ ଅନଭ୍ୟସ୍ତ ? ପାଣି ଆଣିବାକୁ ହେଉ, କାଠ ଆଣିବାକୁ ହେଉ କି ଚାଷକାମରେ ବାପା ମା'ଙ୍କୁ ସାହାଯ୍ୟ କରିବାକୁ ହେଉ, ପିଲା ଦି ତିନି କିଲୋମିଟର ଚାଲନ୍ତି । ମୋ ପିଲାଦିନେ ଖେଳିବାକୁ ପାଞ୍ଚଗାଁ ତିନି କିଲୋମିଟର, ଯାତ୍ରା ଦେଖିବାକୁ ବିନ୍ଧାଣୀମା ଚାରି କିଲୋମିଟର ଆମେ ଚାଲି ଚାଲି ଯାଇ ଆସିଚୁ । ଥରେ ମୁଁ ଆଠଗଡ଼ରେ ପଢ଼ିଲାବେଳେ ଢିଗିରିଆ ଦଶ କିଲୋମିଟର ଚାଲି ଆସିଥିଲି । ଆଠଗଡ଼ରେ ପାଠ ପଢ଼ିଲାବେଳେ ଆମେ ଝାଡ଼ା ଫେରିବା ପାଇଁ ପାହାଡ଼ ଉପରକୁ ପ୍ରାୟ ଅଧକିଲୋମିଟର ପାଖାପାଖି ଯାଉଥିଲୁ ।

ତେବେ ଏଇ ଏକ କଲୋମିଟରରେ ସ୍କୁଲ କରିବା ସହରି ମଧ୍ୟବିତ୍ତ ପିଲାଙ୍କ ଅନୁଭବ ଆଉ ସହରି ଅମଲାତନ୍ତ୍ରର ଭାରତୀୟ ଗାଁ ଜୀବନ ବିଷୟରେ ଅନୁଭବର ଅଭାବର ଚିହ୍ନ ।

ଏଇ ଏକ କଲୋମିଟର ସ୍କୁଲରେ ଯେଉଁ ମାଷ୍ଟ୍ର ରହିବେ ସେମାନଙ୍କର ଟ୍ରେନିଂ ନାହିଁ । ଟ୍ରେନିଂ ଦରକାର କି ଅଦରକାର ଏକଥା ପଚାରିବାକୁ କାହାର ବେଳ ନାହିଁ । ଟ୍ରେନିଂ ନ ପାଇଥିବା ଶିକ୍ଷକ ହୋଇଥିବାରୁ ଏମାନେ ଦ୍ୱିତୀୟ ଶ୍ରେଣୀର ଶିକ୍ଷକ ରୂପେ ଗଣା ହୋଇ କମ୍ ଦରମା ପାଇବେ । ତା ଛଡ଼ା ଏମାନେ ଗାଁର ଲୋକ ହେବେନାହିଁ । ଗାଁର ମାଷ୍ଟ୍ର ଗାଁ ଅଧିକାରୀଙ୍କ ତତ୍ତ୍ୱାବଧାନରେ ରହିଲେ ଅନ୍ତତଃ ଭଲ ନ ପଢ଼େଇଲେ ଗାଁ ଲୋକେ ଆପଣା ପିଲାଙ୍କ ହିତଦୃଷ୍ଟିରୁ ଦି' ପଦ ଗୁହାରି କହିଥାନ୍ତେ । କିନ୍ତୁ ଅପର ଗାଁର ଲୋକେ ସିଏ ପୁଣି ରାଜଧାନୀର କର୍ତ୍ତାଙ୍କ ନିର୍ଦ୍ଦେଶରେ ଚଳନ୍ତି । ଏଥିରେ କିଏ କାହାକୁ କହିବ ? ଥରେ ଆମେ କର୍ଣ୍ଣାଟକର ଗୋଟିଏ ଜିଲ୍ଲାରେ ସ୍କୁଲ ସମୟର ପରିବର୍ତ୍ତନ କରିବା ସ୍ଥିର କଲୁ । ପିଲାଏ ଅଧାଦିନ ପଢ଼ି ଆଉ ଅଧାଦିନ ବାପା ମା'ଙ୍କୁ କାମରେ ସାହାଯ୍ୟ କରିବେ ଏଇ ଉଦ୍ଦେଶ୍ୟରେ ଏପରି ସିଦ୍ଧାନ୍ତ ନିଆଗଲା । ପ୍ରଥମେ ପ୍ରଥମେ ଅଭିଭାବକମାନେ ଉତ୍ସାହ ପ୍ରକାଶ କଲେ କି ଦି ତିନି ଦିନ ପରେ ଆପତ୍ତି କଲେ । ଆମେ ଅନୁସନ୍ଧାନ କରି ଜାଣିଲୁ ଯେ ମାଷ୍ଟ୍ରମାନେ ଧମକ ଦେଉଛନ୍ତି ଯେ ଯଦି ଅଭିଭାବକମାନେ ଆପତ୍ତି ନ କରନ୍ତି ତେବେ ତାଙ୍କ ପିଲାଏ ଫେଲ ହେବେ । କଥା ହେଉଚି ମାଷ୍ଟ୍ରମାନେ ଅନ୍ୟ ଗାଁର । କେହି କେହି ବସ୍‌ରେ ଆସନ୍ତି । ସମୟ ବଦଳେଇଲେ ବସ୍ ସମୟକୁ ତାହା ଖାପିବ ନାହିଁ । ତେଣୁ ଏହି ଆପତ୍ତି । ଶେଷ ପର୍ଯ୍ୟନ୍ତ ସ୍କୁଲ ସମୟ ବଦଳିଲା ନାହିଁ ।

ଶିକ୍ଷକଙ୍କ ଦାୟିତ୍ୱ କହିଲେ ନ ସରେ । ପ୍ରଥମତଃ ଫସଲ ଅଞ୍ଚଳ କିମ୍ବା ଆଦିବାସୀ ଅଞ୍ଚଳକୁ କେହି ଯିବାକୁ ଅରାଜି । ଗଲେ ବି ଅନୁପସ୍ଥିତ । ଥିଲେ ବି ଆଞ୍ଚଳିକ ଭାଷା ଶିଖିବାରେ ଆପତ୍ତି । ପଢ଼େଇବାର 'ଠ' । ପଢ଼େଇବାରେ ସର୍ଜନଶୀଳତା ନାହିଁ । କୌଣସି ପ୍ରାଥମିକ ସ୍କୁଲ ପିଲାଙ୍କୁ ସ୍ଥାନୀୟ ଇତିହାସ ପଢ଼େଇବାର ପ୍ରଚେଷ୍ଟା ମୁଁ କେଉଁଠି ଦେଖିନାହିଁ । ଅଥଚ ଆମ ଚାରିପାଖରେ ମୌଳିକ ସଂସ୍କୃତି ବଞ୍ଚିହୋଇ ରହିଛି । ଦିଅଁ ଦେଉଳ ଭଙ୍ଗା କୋଠି

କବରସ୍ଥାନ ଗଗବତ ଘରକୁ ଧରି ଇତିହାସ ପଢ଼େଇଲେ ପିଲାଙ୍କ ଶିକ୍ଷାରେ ଯେ ଗୁଣାତ୍ମକ ପରିବର୍ତ୍ତନ ହୁଅନ୍ତା ଏ କଥା ବୁଝେଇ କହିବା ଦରକାର ନାହିଁ । ସବୁଠାରୁ ଲାଜର କଥା ଯେ ମାଷ୍ଟ୍ରେ କ୍ଲାସରେ ନ ପଢ଼େଇ ଟିଉସନ କରୁଛନ୍ତି । ଟିଉସନରୁ ସ୍ୱର ପଇସା ଉପୁରି ଲାଭ । ଯୁକ୍ତି ହେଉଛି ଦରମା ଅଣ୍ଟୁନାହିଁ । ଏମିତିକି ବିଶ୍ୱବିଦ୍ୟାଳୟର ମାଷ୍ଟ୍ରେ ଯେଉଁମାନଙ୍କର ଦରମା ବିଷୟରେ ଅଭିଯୋଗ କରିବାର କୌଣସି କାରଣ ନାହିଁ ସେମାନେ ବି ଟିଉସନ କରୁଛନ୍ତି ।

ଏଇଠି ଅଭିଭାବକ ଆଉ ସମାଜର ଦୋଷ । ଟିଉସନ୍ କରିବା ମାଷ୍ଟ୍ରଙ୍କୁ ଏକଘରକିଆ କରିବା ବଦଳରେ ଏବକାର ଅଭିଭାବକ ଟିଉସନକୁ ଆପଣା ଉପରଦଣିଆର ଚିହ୍ନ ବୋଲି ମାନି ନେଉଛନ୍ତି । ପିଲାଙ୍କର ଭଲମନ୍ଦ ଦେଖିବାକୁ ଅଭିଭାବକଙ୍କର ବେଳ ବା କାହିଁ : ସେଇଥିପାଇଁ ଅଢ଼େଇବର୍ଷରୁ ପିଲାକୁ 'କ୍ରେଚ୍'ରେ ଛାଡ଼ିବାଠାରୁ ଆପଣା ବୁଢ଼ା ବାପାମା'ଙ୍କୁ ବୁଢ଼ାଘରେ ରଖିବା, ଏ ସବୁ କାର୍ଯ୍ୟବ୍ୟସ୍ତ ପରିବାରର ସଙ୍କେତ ।

ଅଧିକାଂଶ ସ୍କୁଲରେ ପାଣି ପିଇବାର ବ୍ୟବସ୍ଥା ନାହିଁ । ଖେଳିବାକୁ ଜାଗା ନାହିଁ । ସ୍କୁଲ ଘରପାଖରେ ଛାଇ ଦେବାକୁ ଗଛନାହିଁ । ପରିସ୍ରା ଘର ନାହିଁ କି ପରିସ୍ରା କରିପାରିବାକୁ ଆଢ଼ୁଆଳ ଜାଗା ନାହିଁ । ତଳୁ ସିମେଣ୍ଟ ଛାଡ଼ିଗଲେ ମରାମତି କରିବାର ବ୍ୟବସ୍ଥା ନାହିଁ । ମାଟିଘର ହୋଇଥିଲେ ଅବା ଲିପାପୋଛା ହୁଅନ୍ତା । ସିମେଣ୍ଟ ଘର ମରାମତି ଚାରି ନିର୍ଭର । ସରଞ୍ଜାମ କାହାକୁ ଆସିବ, ମିସ୍ତ୍ରୀ କାହାକୁ ଆସିବେ । ଷାଠିଏ ମହଣ ଘିଅ ହେବ ରାଧା ନାଚିବେ । ତେଣୁ ତଳୁ ସିମେଣ୍ଟ ଛାଡ଼ିଥିବା, କାନ୍ଥରୁ ଚୂନ ଛାଡ଼ିଥିବା ଘରେ ବସି ବିନା ଆଲୁଅ ବିନା ଲାଇବ୍ରେରୀରେ ପିଲାଏ ଯେ କି ଜ୍ଞାନ ସାଧନା କରିବେ ସେ କଥା ଟିକିଏ ବିଚାରନ୍ତୁ ।

ଏଭଳି ଇଲିଚ ସ୍କୁଲବିହୀନ ସମାଜ ବିଷୟରେ ଲେଖିଛନ୍ତି । ସ୍କୁଲ ଉପରେ ଗୁରୁତ୍ୱ ନଦେଇ ଯଦି ଆମେ ଶିକ୍ଷଣ ପଦ୍ଧତି ଓ ଶିଖିବା ଉପରେ ଗୁରୁତ୍ୱ ଦିଅନ୍ତେ ତେବେ ଆମର ପାଠ ପଢ଼େଇବା ଓ ପଢ଼ିବା ସାର୍ଥକ ହୁଅନ୍ତା । କିନ୍ତୁ ଯେଉଁଠି ଶିକ୍ଷାର ଉନ୍ନତିର ପ୍ରଥମ ଓ ପ୍ରଧାନ ଚିନ୍ତା ହେଉଛି ସ୍କୁଲ ଘର ତିଆରି କରିବା, ସେଠି ଏଇସବୁ ଆଲୋଚନା ବିଡ଼ମ୍ବନା ନୁହେଁ କି ?

●

# ମାତୃଭାଷା, ସ୍ୱଦେଶ ଓ ସ୍ୱାଭିମାନ

"ମାତୃଭୂମି ମାତୃଭାଷା ଉଭୟ ଜନନୀ
ସେବା କରୁଥିବ ତାଙ୍କ ଦିବସ ରଜନୀ ।"

କବିଙ୍କର ଏହି କଥାକୁ ଲୋକେ ଭୁଲିଗଲେଣି । ସ୍ୱରାଜ, ସ୍ୱଦେଶ, ସ୍ୱାବଲମ୍ବନ ଆଉ ସ୍ୱାଭିମାନ ଅଭିଧାନର ଶବ୍ଦ ହୋଇଗଲାଣି । ଆପଣାର ଜନ୍ମଭୂମି ଆପଣାର ମାତୃଭୂମି । ବଙ୍ଗଳା କବି ଡି. ଏଲ୍. ରାୟ କହିଛନ୍ତି ଯେ, 'ଧନ ଧାନ୍ୟ ପୁଷ୍ପେ ଭରା ଆମର ଏଇ ବସୁନ୍ଧରା'ର ସର୍ବଶ୍ରେଷ୍ଠ ସ୍ଥାନ ହେଉଛି ଆପଣା ଜନ୍ମଭୂମି । ହେଲେ ଏହା ହେଉଛି ମନର ଜିନିଷ । କଳ୍ପନାରେ ଏହାର ସ୍ଥିତି । ଏହା ସ୍ୱପ୍ନରେ ଉଆଁସେ ପୁଣି ସ୍ମୃତିରେ ଘେରେ । ମାନଚିତ୍ରରେ ଖୋଜିଲେ ଏହା ଅପ୍ରାପ୍ୟ । ପଲ୍ଲୀଶ୍ରୀର ଲେଖକଙ୍କ ଭାଷାରେ କହିଲେ—

"ଛୋଟ ମୋର ଗାଆଁଟି ।
ଭୂଗୋଳ ପୋଥି ପତ୍ରରେ ପଛେ
ନ ଥାଉ ତାର ନାଆଁଟି ।"

ମାତୃଭୂମିର ସମ୍ପର୍କ ଇମୋସନ (emotion ସହ ହୋଇଥିବାରୁ ଆମେରିକାରେ ରହିଥିବା ଭାରତୀୟ ପୁରୁଷ ଭାରତୀୟ ଯେମିତି ଭାରତକୁ ମାତୃଭୂମି ମାନନ୍ତି, ଆମେରିକାରେ ରହିଥିବା ଭାରତୀୟ ପୁରୁଷ ରୁଷୀୟ ଲୋକେ ରୁଷିଆକୁ ସେମିତି ଆପଣା ମାତୃଭୂମି ମାନନ୍ତି । ମନର ଟାଣ ଯୋଗୁଁ ଦୂର ନିକଟ ହୁଏ । ସ୍ୱଦେଶ ସାଙ୍ଗରେ ନାଡ଼ ବାନ୍ଧି ହୋଇ ରହେ । ମନର ଏହି ଐଶ୍ୱର୍ଯ୍ୟ ନଥିଲେ ମାତୃଭୂମି ହୁଏ ବିଦେଶ । ନାନା କପଟର ମୁଖା ପିନ୍ଧି ବିଦେଶକୁ ସ୍ୱଦେଶ କହିଲେ ବି ତହିଁରୁ ଫମ୍ପା ଶବ୍ଦ ବାହାରେ । ଏଥିରେ ଆପଣା ଅସ୍ମିତା ହଜିଯାଏ ।

ମାତୃଭାଷା ମାତୃଭୂମି ପରି ଏକ ସଙ୍କେତ । ମାତୃଭାଷା ମାଆର ଭାଷା ତ ନୁହେଁ, ଏପରିକି ଜନ୍ମଭାଷା ମଧ୍ୟ ନ ହୋଇପାରେ । ମୋଟିଏ ଦୃଷ୍ଟିରୁ ଦେଖିଲେ ଯେଉଁ ଭାଷାରେ ମଣିଷ ପିଲାର ସାମାଜୀକରଣ ହୁଏ ତାହା ହିଁ

ମାତୃଭାଷା । ପୁଣି ଏହି ଦୃଷ୍ଟିରୁ ଦେଖିଲେ ଗୋଟିଏ ପିଲାର ଏକାଧିକ ମାତୃଭାଷା ହୋଇପାରେ । ଗୋଟିଏ ଓଡ଼ିଆ ପିଲା ତାମିଲ ଝିଅକୁ ବାହା ହୋଇ କଲିକତାରେ ବଙ୍ଗାଳୀ ପରିବେଶରେ ରହି ଘରେ ଇଂରାଜୀ ଭାଷାରେ କଥାବାର୍ତ୍ତା କଲେ ତାଙ୍କ ପିଲାଙ୍କର ଗୃହଭାଷା ମାତୃଭାଷା ହେଲା । ପୁଣି ସେଇ ପିଲା ହିନ୍ଦୁସ୍ଥାନୀ ଆୟା ଓ ଗୁର୍ଖା ଦରଓ୍ୱାନ ପାଖରେ ବଢ଼ିଲେ ପିଲାଙ୍କୁ ଛ'ଟି ଭାଷା ବ୍ୟବହାର କରୁଥିବାରୁ ଏଇ ଛ'ଟି ଯାକ ତାର ମାତୃଭାଷା । ତେବେ କଥା ହେଉଛି, ଯେଉଁ ଭାଷା ସାଙ୍ଗରେ ପ୍ରୀତି ସମ୍ପର୍କ ଏତେ ଅଧିକ ଯେ ସେଇ ଭାଷା ହଜିଗଲେ ହୃଦୟ ମନ ଶୁଖିଯାଏ, ମନ କାଙ୍ଗାଳ ହୋଇଯାଏ, ତାହା ହିଁ ପ୍ରକୃତ ମାତୃଭାଷା ।

ଏଇ ମାତୃଭାଷା ପୁଣି ସ୍ୱଦେଶର ମାପ, ଆଉ ତା ବାହାରର ସବୁ ଜାଗା ବିଦେଶ । ଜନ ସୁମାରର ମାତୃଭାଷା ପ୍ରଶ୍ନର ଉତ୍ତରରେ ଯେଉଁମାନେ ପରଦେଶୀ କିମ୍ବା ବାହାର ଗାଁ ବୋଲି ଜବାବ ଦେଇଛନ୍ତି, ସେମାନେ ଏଇ କଥାକୁ ହିଁ ସାବ୍ୟସ୍ତ କରିଛନ୍ତି । ମୁଁ ଏଇ ଅଞ୍ଚଳର ଭାଷା ନ କହୁଥିବାରୁ ପରଦେଶୀ କିମ୍ବା ବାହାର ଗାଁର ଭାଷାଭାଷୀ । ବିଦେଶ ଭାରତ ବାହାରେ ନୁହେଁ, ଭାରତ ଭିତରେ ବି ପରସ୍ପର ପରସ୍ପର ବିଦେଶ । ତାମିଲ, ତେଲୁଗୁ, ଓଡ଼ିଆ, ହିନ୍ଦୀ, ମରାଠୀ, ପଞ୍ଜାବୀ, କାଶ୍ମୀରୀ ପରସ୍ପର ପାଇଁ ବିଦେଶ । ପୁଣି ଗଡ଼ଜାତ ମୋଗଲବନ୍ଦୀ ଯେମିତି ପରସ୍ପର ପରସ୍ପର ପାଖରେ ବିଦେଶୀ ସେମିତି ହିନ୍ଦୋଳ, ଢେଙ୍କାନାଳ, ମୟୂରଭଞ୍ଜ ଆଦି ଗୋଟିଏ ଗୋଟିଏ ରାଜ୍ୟ ପରସ୍ପର ପାଖରେ ଆପଣା ଦେଶ ବିଦେଶ ସମ୍ପର୍କରେ ବନ୍ଧା । ପୁଣି କୋରାପୁଟ ଓଡ଼ିଆ ଓ ଆଦିବାସୀ ଆପଣା ପାଖରେ ବିଦେଶୀ । ତେଣୁ ଗାଁ ବାହାର ବିଦେଶୀ ଓ ଭାରତ ବାହାର ବିଦେଶୀ କଳ୍ପନାରେ ସମାନତା ସାଙ୍ଗକୁ ଭିନ୍ନତା ବି ଅଛି ।

ଗାନ୍ଧି ଉପନିଷଦର 'ଯସ୍ତୁ ଆତ୍ମବାନ୍ ସଃ ଏବ ସ୍ୱରାଟ୍' କଥାରୁ ସ୍ୱରାଜ ଓ ସ୍ୱଦେଶ ଶବ୍ଦର ଅର୍ଥ ଧାର୍ଯ୍ୟ କରିଥିଲେ । ଗାନ୍ଧି ଯେଉଁ ସ୍ୱରାଜର କଳ୍ପନା କରିଥିଲେ ତା ହେଉଛି ଗ୍ରାମ ସ୍ୱରାଜ । ଏଇ ଗ୍ରାମ ସ୍ୱରାଜରୁ ଆରମ୍ଭକରି ଭାରତଛଡ଼ା ତାକୁ ଭିତର ଦେଇ ସାମ୍ରାଜ୍ୟକୁ ସ୍ୱରାଜ ଭାବରେ କଳ୍ପନା କରିବା ଭାରତୀୟ ପାରମ୍ପରିକ ଆଦର୍ଶର ଅଙ୍ଗ । ଓଡ଼ିଆ କବି ଯେମିତି ବନ୍ଦେ ଉତ୍କଳ ଜନନୀ ସାଙ୍ଗକୁ ବନ୍ଦେ ଭାରତ ଜନନୀ ଗାଇଛନ୍ତି, ଭାରତର ସବୁ ଅଞ୍ଚଳ

କବିମାନେ ସେମିତି 'କର୍ଣ୍ଣାଟକ ମାତେ', 'ମା ତାମିଲନାଡ଼ୁ' 'ସୋନାର ବାଂଲା' ସାଙ୍ଗକୁ ଭାରତ ମାତାର ଜୟଗାନରେ ମୁଖର । ଏଠି ଆଞ୍ଚଳିକ ସତ୍ତା ମହାଭାରତୀୟତାର ବିରୋଧୀ ନୁହେଁ, ପରିପୂରକ । ଗୋଟିଏ ଦୃଷ୍ଟିରୁ ଗାଁ ଯେମିତି ସ୍ୱଦେଶ, ଆପଣା ଭାଷାଭାଷୀ ଅଞ୍ଚଳ ସେମିତି ସ୍ୱଦେଶ, ଆଉ ବହୁ ଭାଷାର ସମାହାର ଭାରତଭୂଇଁ ସେମିତି ସ୍ୱଦେଶ । ପୁଣି ଆଉ ଏକ ବ୍ୟାପକ ଦୃଷ୍ଟିକୋଣରୁ ନିଜ-ପର ବିଚାର କରୁଥିବା ଲୋକ 'ଲଘୁ ଚେତସମ୍' ଆଉ ଉଦାର ଚରିତମାନଙ୍କ ମତରେ ସମଗ୍ର ବସୁଧା ହେଉଛି ଗୋଟିଏ କୁଟୁମ୍ବ । ତେଣୁ ସମଗ୍ର ବସୁଧା ହେଉଛି ସ୍ୱଦେଶ । ଇଏ ହେଲା ଦର୍ଶନର କଥା । ଆପଣା ଗାଁକୁ ବସୁଧା ସହିତ ଗୋଟିଏ ସୂତ୍ରରେ ବାନ୍ଧିବାରେ ଯେଉଁ ପରସ୍ତ ପରସ୍ତ ସ୍ୱଦେଶ ଓ ସ୍ୱରାଜ୍ୟର କଳନା ତା ନବୁଝିଲେ ଓଡ଼ିଆତ୍ୱ କିମ୍ବା ଭାରତୀୟତ୍ୱକୁ ବୁଝିହେବନାହିଁ ।

ସ୍ୱାବଲମ୍ବନ ଆଉ ସ୍ୱାଭିମାନ କଥା ଦୁଇଟି ଖାଲି ପରସ୍ପର ସାଙ୍ଗରେ ଯୋଡ଼ା ନୁହଁନ୍ତି; ମାତୃଭାଷା, ମାତୃଭୂମି, ସ୍ୱଦେଶ ଓ ସ୍ୱରାଜ ସହିତ ମଧ୍ୟ ଏମାନଙ୍କର ଅଙ୍ଗାଙ୍ଗୀ ସମ୍ବନ୍ଧ । ଗାଁରେ ବିଭିନ୍ନ ବିନ୍ଧାଣି, ବିଭିନ୍ନ ସମୁଦାୟ, ବିଭିନ୍ନ ସଂପ୍ରଦାୟ, ବିଭିନ୍ନ ଜାତିଆଣ ଗୋଷ୍ଠୀର ପରସ୍ପର ନିର୍ଭରତାରୁ ସ୍ୱାବଲମ୍ବନର ଆରମ୍ଭ । ଦେଶର ବିଭିନ୍ନ ସାମାଜିକ, ରାଜନୈତିକ, ସାଂସ୍କୃତିକ ଓ ଅର୍ଥନୈତିକ ଗୋଷ୍ଠୀଙ୍କର ସମନ୍ୱିତ ବିଚାରରୁ ସେହି ସ୍ୱାବଲମ୍ବନର ବିସ୍ତାରିତ ରୂପ । ଖୋଜି ବସିଲେ ବ୍ୟକ୍ତିସତ୍ତାର ସ୍ୱାଭିମାନରୁ ଆରମ୍ଭକରି ସାମାଜିକତାର ସ୍ୱାଭିମାନ ଭିତରେ ସମ୍ବନ୍ଧ ସହଜେ ଦେଖି ହେବ । ଆପଣା ହାତ ଜଗନ୍ନାଥ । ଆପେ ଯେଉଁ କାମ କରି ହେବ, ପର ନିର୍ଭର ହୋଇ ସେଇ କାମ କରିବାଠାରୁ ତହିଁରେ ଗୌରବ ବେଶି । ଯେଉଁ ଦେଶ ଆପଣା ଖାଇବା, ପିନ୍ଧିବା, ପ୍ରାଥମିକ ଶିକ୍ଷା ଓ ପ୍ରାଥମିକ ସ୍ୱାସ୍ଥ୍ୟ ପାଇଁ ପରଦୁଆରେ ଭିକ୍ଷାଥାଳି ଧରି ଠିଆ ନହୁଏ, ସେଇ ଦେଶର ଗୌରବ ଭିକାରି ଦେଶର ଗୌରବଠାରୁ ବେଶି । ଏହି ଗୌରବବୋଧ ହେଉଛି ସ୍ୱାଭିମାନ ।

ସ୍ୱାଭିମାନ ହେଉଛି ମୁଣ୍ଡ ଉପରକୁ ଟେକି ଚାଲିବାର ଗର୍ବ । ଘରେ ରହିବାରେ ଯେଉଁ ସ୍ୱାଭିମାନ ରାସ୍ତାକଡ଼ରେ ରହିବାରେ ତା' ନାହିଁ । ସେ ଘର ଝାଟିମାଟି ଘର ହେଉ ପଛକେ । ପୁଣି ଘରୁ ବେଘର ହେବାରେ ସେଇ

ସ୍ୱାଭିମାନ ନଷ୍ଟ । ବ୍ୟାଙ୍କରୁ ଋଣ ନେଇ ଦାଣ୍ଡରେ ମୁହଁ ଦରେଇ ହେଉ ବା ପଡ଼ୋଶୀ ବଡ଼ଲୋକଙ୍କ କୋଠା ଘର ଢ଼ଆର ଲୋଭରୁ ହେଉ ବେଘର ହେବାର ଅପମାନରୁ ବଳ କଷ୍ଟ ନାହିଁ । ପୁଣି ଆପଣା ଭାଷା, ଆପଣା ସଂସ୍କୃତି ହେଉଛି ଆପଣା ଘର । ଭାଷାନ୍ତର ହେଲେ ବା ଅପର ଭାଷାପରେ ଆପଣା ସଂସ୍କୃତିର ଚେର କାଟିଲେ ମୁଣ୍ଡ ତଳକୁ ନଇଁଯାଏ, ସ୍ୱାଭିମାନ ନଷ୍ଟ ହୁଏ । ଇଏ ବି ଘରୁ ବେଘର ହେବାର କଷ୍ଟ ।

ମୋଟ ଉପରେ ଯାହାର ଆପଣା ମାତୃଭୂମି ଓ ମାତୃଭାଷା ଉପରେ ଗର୍ବବୋଧ ନାହିଁ, ସିଏ ସ୍ୱାବଲମ୍ବନଶୀଳ ନୁହେଁ ତା'ର ସ୍ୱାଭିମାନ ଆସିବ କେଉଁଠୁ ? ବ୍ୟକ୍ତି କ୍ଷେତ୍ରରେ ଯେପରି ଏହା ସତ, ଜାତି ବା ଦେଶ କ୍ଷେତ୍ରରେ ସେହିପରି । କବି ଗଙ୍ଗାଧର ମେହେରଙ୍କ ଭାଷାରେ କହିଲେ

"ମାତୃଭୂମି ମାତୃ- ଭାଷାରେ ମମତା
ଯା ହୃଦେ ଜନମି ନାହିଁ
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନୀ ରହିବେ କାହିଁ ?"

# ପ୍ରାଥମିକ ଇଂରାଜୀ ଶିକ୍ଷା

ଇଂରାଜୀରେ ପ୍ରାଥମିକ ଶିକ୍ଷା ଦେବାକୁ ଗୃହଆଡ଼ୁ ଦାବି । ଆମ ଘର ଗୃହିଣୀ, ଆମ ଅଫିସ୍‌ର ଚପରାସୀ ମଧ୍ୟ ତାଙ୍କ ପିଲାଙ୍କୁ ଇଂରାଜୀ ସ୍କୁଲକୁ ପଠେଇବାକୁ ଉଦ୍‌ଗ୍ରୀବ । ଏମିତିକ ଏଥିପାଇଁ ତିନିହଜାର ଟଙ୍କା ଦେଇ ଇଂରାଜୀ ଶିଶୁଶ୍ରେଣୀକି ପଠେଇବାକୁ ତିଆର ।

ଏଇ ଦାବି ସହରରୁ ଗାଁକୁ ବ୍ୟାପୁଛି । ଗାଁରୁ ତେର ଛନ୍ତିରେଇ କମ୍ବା ଗାଁର ଜାତିଆଣ ଉପଦ୍ରବରୁ ମୁକ୍ତି ପାଇବା ପାଇଁ ସହରକୁ ପଳାଇଥିବା ଲୋକଙ୍କର ନୂଆ ଅସ୍ମିତା ଚିହ୍ନ ଇଂରାଜୀ । ଏହି ଭାଷା ଜାଣିଆରେ ସହରରେ ଖାଲି ଚଳପ୍ରଚଳ ନୁହେଁ; କାମ, ପଇସା ଓ ମାନସମ୍ମାନ ମିଳେ । ତେଣୁ ଗାଁକୁ ଏହା ବ୍ୟାପିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

କେତେବର୍ଷ ତଳେ ମହାରାଷ୍ଟ୍ରରେ ବହୁଜନ ସଭା ଇଂରାଜୀ ସପକ୍ଷରେ ଯୁକ୍ତି ଦେଇ କହିଥିଲେ ଯେ ବଡ଼ ଜାତି ଓ ବଡ଼ବଡ଼ିଆ ଲୋକେ ଇଂରାଜୀ ଭାଷା ଜାଣିଆରେ ସବୁ ସୁବିଧା ହାସଲ କଲେ । ଆଜି ଯେତେବେଳେ ଇଂରାଜୀ ଶିକ୍ଷା ସାଧାରଣଙ୍କ ହାତପାଆନ୍ତାକୁ ଆସୁଛି ସେତେବେଳେ ଇଂରାଜୀ ବିରୋଧୀ ଆନ୍ଦୋଳନ ଆରମ୍ଭ ହେଉଛି । ପ୍ରଥମ କଥା ମନେରଖିବାର ଅଛି ଯେ ବଡ଼ବଡ଼ିଆଙ୍କ ଇଂରାଜୀ ଭାଷା ସାନମାନଙ୍କ ପାଖକୁ କେବେ ଆସିବ ନାହିଁ । ସାନସାନମାନେ ଯେଉଁ ଇଂରାଜୀ ପଢ଼ିବେ ତାହା ଅଶୁଦ୍ଧ, ଅସାମାଜିକ ଓ ଚିହ୍ନିତ ଭାଷା ହୋଇ ରହିବ । ପ୍ରଥମେ ଇଂରାଜୀ ପଢ଼ୁ ନଥିଲେ ବୋଲି ସେମାନେ ଟାଳି ଖାଉଥିଲେ । ଇଂରାଜୀ ପଢ଼ିଲାପରେ ଭୁଲ ଇଂରାଜୀ ପଢ଼ିଲେ ବୋଲି ସେମାନେ ଗାଳି ଖାଇବେ । ପୃଥିବୀରେ ଅଧିକାଂଶ ବିକାଶଶୀଳ ଦେଶରେ ଏହାର ଉଦାହରଣ ଅଛି । ଦ୍ୱିତୀୟତଃ ମାତୃଭାଷାରେ ପ୍ରାଥମିକ ଶିକ୍ଷାକୁ ଇଂରାଜୀ ବିରୋଧୀ ଆନ୍ଦୋଳନ କହିବା ଅନୁଚିତ । ମାତୃଭାଷା ଯେ ପ୍ରାଥମିକ ଶିକ୍ଷାର ବାହନ ହେବ ଏ ବିଷୟରେ ପୃଥିବୀର ସବୁ ଶିକ୍ଷାବିତ୍ ସହମତ । ପ୍ରାଥମିକ ଶିକ୍ଷା ମାତୃଭାଷାରେ ପ୍ରତିଷ୍ଠିତ ହେଲା ପରେ ଇଂରାଜୀ କମ୍ବା ଯେ କୌଣସି ଭାଷା ଶିଖିବାରେ କାହାର ଆପତ୍ତି ନାହିଁ ।

ଆମ ଦେଶରେ ଶତକଡ଼ା ପଚାଶ କମ୍ବା ଷାଠିଏ ଲୋକ ନିରକ୍ଷର। ସ୍ତ୍ରୀମାନଙ୍କର ନିରକ୍ଷରତା ପୁରୁଷମାନଙ୍କଠାରୁ ଅଧିକ। ଆମ ଦେଶରେ ଦୁଇରୁ ଚାରି ପ୍ରତିଶତ ଲୋକ ଇଂରାଜୀ ଭାଷା ଜାଣନ୍ତି। ଏପରି ଅବସ୍ଥାରେ ପ୍ରାଥମିକ ସ୍ତରରେ ଇଂରାଜୀ ଭାଷା ପଢ଼େଇଲେ ତହିଁରେ ପରିବାରର ଯୋଗଦାନ ରହିବ ନାହିଁ। ଘର ଓ ସ୍କୁଲ ମଧ୍ୟରେ ବ୍ୟବଧାନ ବଢ଼ିଯିବ। ସ୍କୁଲରେ ଘରଭାଷା ବ୍ୟବହାର କରା ନଯାଉଥିବାରୁ ଓ ପରେ ସ୍କୁଲ କାମର ପୁନରାବୃତ୍ତି ନହେଉଥିବାରୁ ପିଲାର ମାନସିକତା ଓ ଶିକ୍ଷା ଭିତରେ ଦୂରତା ଆହୁରି ବଢ଼ିଯିବ।

ଆଜି ଉପର ଶ୍ରେଣୀର ଲୋକଙ୍କ ଭିତରେ ଇଂରାଜୀ ଶିକ୍ଷା ପାଇଁ ବ୍ୟସ୍ତତା ଦେଶକୁ ବଡ଼ କରିବା ପାଇଁ ନୁହେଁ। ଆପଣାକୁ ବଡ଼ କରିବା ପାଇଁ ଆପଣାର ଓ ଆପଣା ପିଲାକବିଲାଙ୍କ ପାଇଁ ବିଦେଶ ଯିବାର ସ୍ୱପ୍ନକୁ ସାର୍ଥକ କରିବା ପାଇଁ ଚାବିକାଠି ଇଂରାଜୀ ଭାଷା। ତେବେ ତଳ ଶ୍ରେଣୀର ଲୋକେ ଏଇ ସ୍ୱପ୍ନରେ ଭାଗୀଦାର ହେବାକୁ ଚାହିଁଲେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ଏଇ ଇଂରାଜୀ ଛାପା ସହିତ ଟେଲିଭିଜନ ବିଜ୍ଞାପନର ଅଙ୍ଗାଙ୍ଗୀ ସମ୍ପର୍କ ଅଛି। ଅଙ୍କଲ ଚିପସ, ଲାହିରପେପ୍‌ସି, କୋର ସାବୁନ ଆଉ କୋର ତେଲ ଆମ ଚଳଣିକୁ ପ୍ରଭାବିତ କରୁଛି। ବାପା ବୋଉ ବଦଳରେ ଡାଡି ମମି ଆଧୁନିକତା ଦିଗରେ ଆଗକୁ ପାଦେ ବୋଲି ଗ୍ରହଣ କରିନେବାରେ ଆମର ଆପତ୍ତି ନାଇଁ। ଅଙ୍କଲ ଆଣ୍ଟି ଆମ ମାନସିକତାକୁ ଏପରି ପ୍ରଭାବିତ କରୁଛି ଯେ ମଉସା ମାଉସୀ କହିବାକୁ ଲାଜ ଲାଗୁଛି।

କିନ୍ତୁ ତଳଶ୍ରେଣୀର ଇଂରାଜୀ ଶିକ୍ଷା ପାଇଁ ଅନ୍ୟ ଏକପ୍ରକାର ବାଧ୍ୟତା ଅଛି। ଆଜି ମଧ୍ୟମ ବର୍ଗର ଷଡ଼ଯନ୍ତ୍ର ଫଳରେ ମାତୃଭାଷାରେ ରୋଜଗାର ନାହିଁ। ଚପରାସି ବା ଦ୍ୱାରି ମାହୁନ୍ତ ଚାକିରି ପାଇଁ ଇଂରାଜୀ ଦି ଅକ୍ଷର ଜାଣିବା ଦରକାର। ଏଠି ଗୋଟିଏ ମଜା ଅଥଚ ଦୁଃଖକର ଗପ ନଲେଖି ରହି ପାରୁନାହିଁ। କେତେବର୍ଷ ତଳେ ଗୋଟିଏ ବିଦେଶୀ ରାଜ୍ୟ ଆମ ଉପକୂଳବର୍ତ୍ତୀ କେଉଟଙ୍କ ଜୀବନଧାରଣ ମାନ ବଢ଼େଇବା ପାଇଁ କଳଡଙ୍ଗା ଦେବାକୁ ସ୍ଥିର କଲେ। କଳଡଙ୍ଗା ଆସିଲା। ତାକୁ ଚଳେଇ ଶିଖିବା ବହିର ଭାଷା ଇଂରାଜୀ। ସେଇ ବହିକୁ ମାତୃଭାଷାରେ ଅନୁବାଦ କରିବା ବଦଳରେ କେଉଟଙ୍କୁ ଇଂରାଜୀ

ଭାଷା ଶିଖେଇବା ପାଇଁ ଭାଷା ଲାବରେଟାରୀ ସାହାଯ୍ୟ ରୂପେ ହଆଗଲା । ଯେତେବେଳେ ଦେଖାଗଲା ଯେ ନିରକ୍ଷର କେଉଟଙ୍କୁ ଇଂରାଜୀ ଶିଖାଇବା କଠିନ, ସେତେବେଳେ ବେରୋଜଗାର ଗ୍ରାଜୁଏଟ୍‌ଙ୍କୁ କଲଡଙ୍ଗା ଚଲେଇବା ଶିଖେଇବା ସ୍ଥିର କରାଗଲା । ଫଳରେ ବିଚରା ଗରିବ କେଉଟ ତାଙ୍କ ଡଙ୍ଗା ତ ହରେଇଲେ; ତାଙ୍କ ଧନ୍ଦା ମଧ୍ୟ ହରେଇଲେ ।

ଗାଁରେ ଇଂରାଜୀ ସ୍କୁଲର ଆଉ ଗୋଟିଏ ଦିଗ ଅଛି । ଇଂରାଜୀ ସ୍କୁଲ ପିଲାଏ ପ୍ୟାଣ୍ଟ କୁର୍ତ୍ତା କମ୍ବା ସୁଟ ପିନ୍ଧନ୍ତି । କେଉଁଠି କେମିତି ରିକ୍ସାରେ ବସି ଯାଆନ୍ତି । ଓଡ଼ିଆ ସ୍କୁଲରେ ଏ କଳ୍ପନା ମଧ୍ୟ ଅସମ୍ଭବ । ମାହାଙ୍ଗାର ଗୋଟିଏ ଗାଁରେ ମେହେନ୍ତର ସାଇରେ ଯେଉଁ ଇଂରାଜୀ ସ୍କୁଲ ସେଠି ମାଷ୍ଟ୍ର ବ୍ରାହ୍ମଣ, ଖଣ୍ଡାୟତ । ଆଉ ପିଲାଏ ବ୍ରାହ୍ମଣ, କରଣ, ଖଣ୍ଡାୟତ ଘର ବେଶି । ସମାଜର ଅଛୁଆଁପଣ ଭାଙ୍ଗିବା ପାଇଁ ଏହା ଏକ ଅସ୍ତ୍ର ।

ରାଜନୈତିକ ଦଳର କର୍ମୀ ଓ ସମର୍ଥକମାନେ ଲୋକମାନଙ୍କର ଏଇ ମନୋଭାବର ସୁଯୋଗ ନେଇ ଇଂରାଜୀ ସ୍କୁଲକୁ ପଇସା ରୋଜଗାରର ସାଧନ କରିଛନ୍ତି । ପିଲାମାନଙ୍କର ଭଲମନ୍ଦକୁ ପଚାରେ କିଏ ? ବଡ଼ ମଣିଷଙ୍କ ଆଶା ଓ ସ୍ୱପ୍ନକୁ ସାକାର କରିବାର ଲୋଭ ଦେଖେଇ ଯେଉଁମାନେ ପିଲାମାନଙ୍କର ଜୀବନ ନଷ୍ଟ କରୁଛନ୍ତି ସେମାନଙ୍କୁ ଦେଶଦ୍ରୋହୀ ଛଡ଼ା କଣ କୁହାଯାଇପାରେ ?



# ପିଲାଦିନ

ଆଜିକାର ପିଲାଙ୍କର ପିଲାଦିନ ସାଙ୍ଗରେ ଆମ ପିଲାଦିନ କଥା ମିଳେଇ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ଯେତିକି ଦୁଃଖ ଲାଗେ ତା'ଠାରୁ ବେଶି । ମୋ ପିଲାଦିନ ମୋ ବୋଉ ଖୁଡ଼ୀଙ୍କ ଛଡ଼ା ମାଉସୀ ମାମା, ନୂଆ ମା', କଟକ ମାମା ଆଉ କେତେ ଯେ ମାମା ଥିଲେ ସେସବୁ ମନେ ପକେଇଲେ ମନ କୁତୁକ ଉଠେ । ତା' ସାଙ୍ଗକୁ କୁନ୍ତ ମା', କୋକିଳ ବୋଉ, ବସନ୍ତ ମା', ମୁକ୍ତା ମା' ଏମାନଙ୍କ ଭିତରୁ କିଏ କାମ କରିବାକୁ ଆମେ ତ କିଏ ଚୁଡ଼ା ଚକିବାକୁ । ପୁଣି ଛଡ଼ା ଉଆସର ସୁନା, ପୁଅ ମା ଆଦି କେତେ କିଏ । ପୁଣି ଚନ୍ଦ୍ର ଅପା, ମିନା ଅପା, ନିର୍ମଳା ଅପା, ସୁଧା ଅପା, ନଳିନୀ ଅପା ଆଉ ଗୁରୁ ଅପା ଆଦି କେତେ ପିଉସୀ । ଖୋକାନା, ଟୁନା, ବୁଡ଼ା, ପ୍ରେମ ଅପା, ଟୁକୁନା ଅପା, ଚୁନି, ମନା ଆଦି ଭାଇଭଉଣୀଙ୍କ ମେଳରେ ସ୍ନେହ-ଆଦର ମିଶା ଗପ ଗୀତ, ପହଳି, ଓଷା ପାର୍ବଣର କଥା, ପୁରାଣ ପଢ଼ା ଆଦି ଭିତରେ ବଢ଼ିବାର ଆନନ୍ଦ କଥା ଭାବିଲେ ଆଜିବି ମନ ଜକେଇ ଉଠେ । ଭଗିଆ (କେଉଟ), ବିଶ୍ୱନାଥ ସାହୁ (ତେଲି), ବସନ୍ତ ଓ ବ୍ରଜ (ଚଷା) ଏମାନେ ସବୁ ଭାଇ ହୋଇ ମୋ ପିଲାଦିନକୁ କେତେ ଉର୍ବର କରିଛନ୍ତି କହିଲେ ସରିବ ନାହିଁ । ଆଉ ଆଜିକାଲି ? ଆଜିକାଲି ପିଲାମାନଙ୍କର ବାପା ମା'ଙ୍କୁ ନେଇ ପରିବାର । ତହିଁରେ ବାପା ମା' ଦି'ଜଣ କାମକୁ ଗଲେ ପିଲା ଘରେ ଏକା । ବଡ଼ ବେଶୀ ହେଲେ ସ୍କୁଲରେ ମାଷ୍ଟ୍ରେ ଆଉ ସାଙ୍ଗପିଲା । ପୁଣି ମୋ ବୋଉ ଯେତେ ଗପ, ପୁରାଣ କଥା ଆଉ ବ୍ରତକଥା ଜାଣିଥିଲା, ମୋ ଝିଅଙ୍କ ବେଳକୁ ତା'ର କାଣିଚାଏ ବି ନାହିଁ । ଏଥିରେ ଆଜିକାଲି ପିଲାଙ୍କର ମାନସିକତା ସଂସ୍କୃତିର କେଉଁ ଚେରନ୍ତୁ ରସ ଟାଣି ଉର୍ବର ହେବ ?

ମୋ ପିଲାଦିନେ ଦାଣ୍ଡିଆ ମାଷ୍ଟ୍ରେ ଆମ ସାଇର ସବୁ ପିଲାଙ୍କୁ ଏକାଠି ଅକ୍ଷର ଶିକ୍ଷା, ପଣକିଆ, ଗଣିତ, ପ୍ରକୃତି ପର୍ଯ୍ୟବେକ୍ଷଣ ଆଦି ଶିଖାଉଥିଲେ । ଆଉ ଆଜି ? ଜ୍ଞାନ ଖୁନ୍ଦି ପିଲାଙ୍କୁ ଆଗକୁ ବଢ଼େଇବା ଇଚ୍ଛାରୁ ବହି ସଂଖ୍ୟା ଏତେ ବଢ଼ିଲାଣି ଯେ ସେସବୁ ବହିର ବୋଝ ବୋହିବାରେ ପିଲାର ପିଲାଦିନ

କୁଆଡ଼େ ଉଭେଇ ଗଲାଣି । ପୁଣି ଆଜିକାଲି ଇଂରାଜୀ ମୋହ ଏତେ ବ୍ୟାପି-
ଗଲାଣି ଯେ ଓଡ଼ିଆ ବଦଳରେ ଇଂରେଜୀ ପଢ଼େଇବାରେ ପିଲାର କି କ୍ଷତି
ହେଉଛି ସେ କଥା ଦେଖିବାର ବେଳ କାହାରି ନାହିଁ । ପିଆଜେ, ହେଟେଲ
ହେମ୍ପଲ୍କପରି ପଣ୍ଡିତମାନେ ପିଲାଙ୍କ ବିଷୟରେ ଗବେଷଣା କରି ଆମ ଆଗରେ
ଯେଉଁ ଜ୍ଞାନର ଭଣ୍ଡାର ରଖିଯାଇଛନ୍ତି ସେଥିରେ ଆମେ ଗୋବ ପକେଇ
ଦେଇଛୁ । ପିଲାଦିନର ପ୍ରତ୍ୟେକ ସ୍ତର ସ୍ୱୟଂସମ୍ପୂର୍ଣ୍ଣ ଏବଂ ଗୋଟିଏରୁ ଆଉ
ଗୋଟିଏ ସ୍ତରକୁ ଯିବାରେ ଯେଉଁ ଅବୈଜ୍ଞାନିକ ବିଶ୍ୱାସ, ପରୀ କଥା,
ପଶୁପକ୍ଷୀଙ୍କ କଥା, ମଣିଷର ବିକାଶ ସାଙ୍ଗେ ସାଙ୍ଗେ ବଢ଼ିଆସିଛି ତା'ର ଯେ
ଆବଶ୍ୟକ ସ୍ଥାନ ରହିଛି, ଏକଥା ସେମାନେ କହିଥିଲେ ସୁଦ୍ଧା ଆମେ ତାକୁ
ଫୋପାଡ଼ି ଦେଇଛୁ । ଅପର ଭାଷା ଜରିଆରେ ଅସମ୍ବନ୍ଧ ସୂତ୍ରକୁ ଏକାଠି
ଗୁନ୍ଥିବା ଚେଷ୍ଟା ଯେ କେତେ ବିଫଳ ଏକଥା ଆମେ ଦେଖି ବି ଦେଖୁନୁ ।

ପିଆଜେ ପିଲାଙ୍କର ବଢ଼ିବାକୁ ଅନୁସରଣ କରି ଏଇ ସିଦ୍ଧାନ୍ତରେ
ପହଞ୍ଚିଥିଲେ ଯେ, ପିଲା ଯାହା ଶିଖିବାକୁ ପ୍ରସ୍ତୁତ ହୋଇଥିବ ତାହା ହିଁ ଶିଖିବ ।
ଭାଷା ପ୍ରୟୋଗରେ ଏହାର ଅର୍ଥ ହେଲା ଯେ ଯେଉଁ ଭାଷାରେ ପିଲା ଶିଖିବା
ପାଇଁ ତିଆରି ହୋଇଥିବ, ଯେଉଁ ଭାଷାରେ ସିଏ ଅର୍ଥ ଅବବୋଧ କରିପାରିବ
ସେଇ ଭାଷା ହିଁ ତା'ର ପ୍ରାଥମିକ ଶିକ୍ଷାର ବାହନ ହେବ । ବଡ଼ ମଣିଷଙ୍କ
ଭାଷା, ଅପରିଚିତ ଭାଷାରେ ବଡ଼ ମଣିଷଙ୍କର ଯେତେ ସ୍ୱପ୍ନ ଆଶା ଭରସା
ଥାଉନା କାହିଁକି, ତା' ପିଲା ପକ୍ଷରେ ଅଖାଦ୍ୟ । ପିଲା ଯେଉଁ ଭାଷା ଭଲ
ଭାବରେ ଜାଣିଛି, ଯେଉଁ ଭାଷାରେ ସିଏ ମନଇଚ୍ଛା ବାକ୍ୟ ଗଢ଼ିପାରେ, ଅର୍ଥ
ପ୍ରକାଶ କରିପାରେ, ଯାହା ତା'ର ଆପଣାର, ସେଇ ଭାଷା ହିଁ ତା'ର ଶିକ୍ଷାର
ବାହନ । ପରବର୍ତ୍ତୀକାଳରେ ଯଦି ତା'ର ସମବୟସ୍କମାନେ ଇଂରାଜୀ ଭାଷା
କହନ୍ତି ତେବେ ସିଏ ଇଂରାଜୀ ଭାଷା ଶିଖିପାରିବ । ଏଥିପାଇଁ ପ୍ରାଥମିକ ଭାଷାରେ
ପ୍ରତିଷ୍ଠିତ ହୋଇଗଲେ ଇଂରାଜୀକୁ ବିଷୟରୂପେ ଶିଖି ଏଥିପାଇଁ ପ୍ରସ୍ତୁତ
କରାଯାଇପାରେ । କିନ୍ତୁ ଇଂରାଜୀ ପ୍ରାଥମିକ ଶିକ୍ଷାର ମାଧ୍ୟମ ହେଲେ ଏହା
ଯେ ପିଲା ପକ୍ଷରେ ହାନିକାରକ, ଏଥିରେ ସନ୍ଦେହ ନାହିଁ । ଯେଉଁ ଭାଷା କହି
ବୋଲି ପାରିଲେ ପିଲାର ଆଖି ଆନନ୍ଦରେ ନାଚିଉଠେ ସେହି ଭାଷାରେ
ଲେଖାପଢ଼ା ଆରମ୍ଭ କରିବା ଶ୍ରେୟ । ଟେରହାନ ସରଳୀକରଣରେ ଯେତେ
ଭୁଲଚୁକ୍ ଥିଲେ ବି ତାହା ପିଲାଙ୍କ ପୃଥିବୀ ହୋଇ ନଥିବାରୁ

ସେଠି ଅପର ଲୋକଙ୍କ ଅନୁଭବର ଅନୁବାଦ, ଆପଣା ଅନୁଭବର ସ୍ୱୟଂ ପ୍ରକାଶ ନାହିଁ ।

ଯେଉଁ ପରିବେଶରେ ପିଲାର ଜନ୍ମ ସେଇ ପରିବେଶ ସହ ପରିଚୟ ଭାଷାର ପ୍ରଥମ କର୍ମ । ସେଇଥିପାଇଁ ଭାଷାର ପ୍ରଥମ ପ୍ରକ୍ରିୟା ହେଲା ନାମକରଣ । ମୋ ପିଲାଦିନର ଶାଗ (କୋଶଲା, ନେଉଟିଆ, ବଥୁଆ, ଖଡ଼ା, ପୁନ୍ନଣି, ଅନାବନା, ଝୁମ୍ପୁଡ଼, କାନସିର, ଆମ୍ବିଳପିତ୍ତ, ମଦରଙ୍ଗା, ସୁନୁସୁନିଆଁ) ନାଁ ଆଜି ପିଲାଙ୍କ ମୁହଁରେ ହଜିଗଲାଣି । ଖାଲି ଶାଗ ନୁହେଁ; ଫୁଲଫଳ, ପଶୁପକ୍ଷୀ, ମାଟି ପାଣିର ନାଁ ଆଜିର ଇଂରାଜୀ ପଢ଼ୁଆ ଶିଶୁ ପିଲାଙ୍କୁ ପରିଚୁ ନାହିଁ । ପିଲା-ଭୁଲାଣିଆଁ ଓଡ଼ିଆ ଗୀତ ବଦଳରେ ଅର୍ଥହୀନ 'ବା ବା ବ୍ଲାକ ସିପ୍' ଓଡ଼ିଆ ପିଲାଙ୍କ ମୁହଁରେ ହସ ଉକୁଟେଇବା ବଦଳରେ ନିରର୍ଥକ ଅନୁକରଣର ବିଭ୍ରାନ୍ତି ସୃଷ୍ଟି କରୁଛି ।

ଜଣାରୁ ଅଜଣା, ଚିହ୍ନାରୁ ଅଚିହ୍ନାକୁ ଗତି ଜୀବନ୍ତ ଶିକ୍ଷାର ଲକ୍ଷଣ । ବଢ଼ୁଥିବା ପିଲା ତା'ର ଚିହ୍ନା ପରିବେଶ, ଚିହ୍ନା ଲୋକବାକ ଭିତରେ ମାନସିକ ଆଶ୍ରୟ ଖୋଜେ । ଫୁଲ ମାନ, ବଢ଼ିଲା, ଫୁଟିବା ପାଇଁ ଉନ୍ମୁଖ, ଶିଖିବା ପାଇଁ ଭିଆରି ହେବୁ ଜୀବନରେ ନୂଆ ନୂଆ ଅନୁଭବକୁ ସାଉଁଟି ବଢ଼ିବା ସ୍ୱାଭାବିକ । କିନ୍ତୁ ଯେଉଁଠି ପ୍ରଶ୍ନ କଲେ ଉତ୍ତର ଦେବାକୁ କେହି ନାହାଁନ୍ତି, ଯେଉଁଠି ଶବ୍ଦ ଅଛି ଅର୍ଥ ନାହିଁ, ଯେଉଁଠି ମଣିଷ ଅଛନ୍ତି ସେମାନଙ୍କର ପରିଚୟ ନାହିଁ, ଯେଉଁଠି ସଙ୍କେତ ଅଛି ଅଥଚ ଭାଗ ବସେଇବାର ଲୋକ ନାହାଁନ୍ତି, ସେପରି ବଢ଼ିବାର ଭୟାବହତା ବିଷୟରେ ଆମେ ଭାବୁଛୁ କି ?

ପଢ଼ିବା ଅର୍ଥ କିହିରେ ଲେଖା ଚିହ୍ନାଗୁଡ଼ିକୁ ଶିଖି ଜାଣିବା ନୁହେଁ, ଏହା ଲେଖକର ମନ ସହିତ ସଂଯୋଗ ସ୍ଥାପନ କରେ । ଯଦି ଲେଖା ବିଷୟ ଆଉ ଗଢ଼ଣରେ ବନ୍ଧା ଆମ ଜଣା ଅନୁଭବଠୁ ସମ୍ପୂର୍ଣ୍ଣ ଭିନ୍ନ ହୁଏ, ଯଦି ଲେଖକର ସ୍ୱପ୍ନ ପାଠକର ସ୍ୱପ୍ନରୁ ଅଲଗା ହୁଏ, ଯଦି ଲେଖକର ଧରଣ, ଶୈଳୀ ଓ ଶୃଙ୍ଖଳା ପାଠକଠୁ ଭିନ୍ନ ହୁଏ ତେବେ ବିଷୟ କଠିନ ମନେହୁଏ । ତା' ହେଲେ ଆମେ ହୁଏତ ଅକ୍ଷର କିମ୍ବା ଶବ୍ଦ ଚିହ୍ନି ଚିହ୍ନି ପଢ଼ୁ । କିନ୍ତୁ ତା' ଠିକ୍ ଅର୍ଥରେ ପଢ଼ିବା ନୁହେଁ ।

ବାକ୍ୟ ଗଠନରୁ ଧରି ପଢ଼ିବା ହେଉ କି ଅର୍ଥଗ୍ରହଣରୁ ଧରି ପଢ଼ିବା ହେଉ ଦୁହେଁଯାକ ଏପରି ଏକ ଜାଗାରେ ମିଳନ୍ତି ଯେଉଁଠି ଚିହ୍ନା ରାସ୍ତା ଅଜଣା ଆଡ଼କୁ ଇଙ୍ଗିତ କରେ । ଏହି ରାସ୍ତାର ଗୋଟିଏ ପଟରେ ଗ୍ରହଣ, ଆମ ପୂର୍ବସୂରୀମାନେ ଯାହା କହିସାଇଛନ୍ତି ତାହାରି ଅବବୋଧନ । ରାସ୍ତାର ଅନ୍ୟପଟେ ସର୍ଜନ । ଜଣାକୁ ଧରି ନୂଆ ନୂଆ ଆଦର୍ଶର ସୃଷ୍ଟି । ମୂଳକଥା ହେଲା ପରିବେଶର ପରିଚିତି ।



# ଓଡ଼ିଆ ବିରୋଧରେ ଷଡ଼ଯନ୍ତ୍ର

ଭାରତର ସବୁ ଅଞ୍ଚଳ ପରି ଓଡ଼ିଶାରେ ବି ଗୃହଶତ୍ରୁ ବିଭୀଷଣ । ତେବେ କଥା ହେଉଛି ଭାରତର ବିଭିନ୍ନ ଅଞ୍ଚଳରେ ଭାଷା ପ୍ରତି ଜାଗରୂକତା ଅଛି । ଓଡ଼ିଶାରେ ତା ନାହିଁ । ଅନ୍ୟାନ୍ୟ ଭାଷା, ସାହିତ୍ୟ, ସଂସ୍କୃତି ପାଇଁ ଗର୍ବ କରିବାର ଲୋକ ଅଛନ୍ତି । ଓଡ଼ିଶାରେ ସେପରି ଲୋକ ତ ନାହାନ୍ତି । ଥିଲେ ବି ସେମାନେ କେଉଁଠି କେମିତି ।

ପ୍ରାଦେଶିକ ଭାଷାରେ ପ୍ରାଥମିକ ଶିକ୍ଷା ଦିଆଯିବା ପାଇଁ ସାମ୍ବିଧାନିକ ବ୍ୟବସ୍ଥା ଥିଲେ ମଧ୍ୟ ପଶ୍ଚିମୀ ଗୋଲାମ ଶିକ୍ଷିତବର୍ଗଙ୍କ ଯୋଗୁଁ ଏହା ଏଯାଏ ବି କାର୍ଯ୍ୟାନ୍ୱିତ ହୋଇ ପାରିଲା ନାହିଁ । ଓଡ଼ିଶା ଏହାର ବ୍ୟତିକ୍ରମ ନୁହେଁ । ଓଡ଼ିଶାରେ ବି ଇଂରାଜୀ ସ୍କୁଲର ବଢ଼ି । ପ୍ରଥମ ଶ୍ରେଣୀରେ ନାଁ ଲେଖାଇବା ନିୟମ ହେଲା ଛ ବର୍ଷ । ପ୍ରାଇମେରୀ ପୂର୍ବରୁ ଓଡ଼ିଆ ମାଧ୍ୟମରେ ଶିକ୍ଷା ଦେବାର କୌଣସି ବ୍ୟବସ୍ଥା ନାହିଁ । ପିଲାଏ ତ ତିନି ଚାରି ବର୍ଷରୁ ପଢ଼ିବାକୁ ତିଆରି । ତେଣୁ ବାଧ୍ୟ ହୋଇ ଇଂରାଜୀ ମାଧ୍ୟମରେ ନର୍ସରି, ଏଲ୍‌କେଜି/ୟୁକେଜି ପଢ଼ିବାକୁ ଯିବାକୁ ପଡ଼ୁଛି । ଓଡ଼ିଆ ମାଧ୍ୟମରେ ପ୍ରାଥମିକ ଶିକ୍ଷା ପାଇଁ ଏହା କ୍ରୂର ଉପହାସ ଛଡ଼ା କ'ଣ ହୋଇପାରେ ?

ମୁଁ ଇଂରାଜୀ ଶିକ୍ଷାର ବିରୋଧୀ ନୁହେଁ । କିନ୍ତୁ ପ୍ରାଥମିକ ସ୍ତରରେ ଇଂରାଜୀ ଶିକ୍ଷାର ମୁଁ ଘୋର ବିରୋଧୀ । ବିଶେଷକରି ଇଂରାଜୀ ମାଧ୍ୟମ ଶିକ୍ଷାର ମୁଁ ବିରୋଧୀ । ପୃଥିବୀର ଅଧିକାଂଶ ଦେଶରେ ଶିକ୍ଷା କ୍ଷେତ୍ରରେ ଯେଉଁ ସବୁ ପରୀକ୍ଷା ନିରୀକ୍ଷା ହୋଇଛି, ସେଥିରୁ ସ୍ପଷ୍ଟ ପ୍ରମାଣିତ ହୋଇଛି ଯେ ମାତୃଭାଷା ହିଁ ପ୍ରାଥମିକ ଶିକ୍ଷାର ପ୍ରକୃଷ୍ଟ ମାଧ୍ୟମ । ବହୁତ ସ୍ଥାନରେ ଏହା ପ୍ରମାଣିତ ହୋଇଛି ଯେ ପ୍ରାଥମିକୋତ୍ତର ଇଂରାଜୀ ଶିକ୍ଷା ପ୍ରାଥମିକ ଇଂରାଜୀ ଶିକ୍ଷାଠାରୁ ଅଧିକ ଦୀର୍ଘସ୍ଥାୟୀ ଓ ଅଧିକ ଫଳପ୍ରସୂ ।

ଇଂରାଜୀ ପ୍ରାଥମିକ ଶିକ୍ଷା ଆଉ ଯାହା କରୁ ନକରୁ ଆପଣା ପରିବେଶ ଆପଣା ସଂସ୍କୃତିର ଚେରକୁ କାଟିଦିଏ । ଗାଁରେ ଯେ କୌଣସି ପିଲା ଅନ୍ତତଃ ପାଞ୍ଚ ଛ' ପ୍ରକାର ଶାଗର ନାଆଁ କହିପାରିବ । ଇଂରାଜୀ ମାଧ୍ୟମର

ପଢ଼ିଥିବା ପିଲା ଇଂରାଜୀରେ ଯୋଡ଼ଏ ନାଁ ତ କହିପାରିବ ନାହିଁ, ଓଡ଼ିଆ ନାଁ କହିବା କଠିନ । ଇଏ ତ ହେଲା ଆରମ୍ଭ । ଏଇଥିରୁ ଧରି ଲେଖି ବସିଲେ ଓଡ଼ିଆ ଗୃହିଣି ଓ ଚଳଣିରୁ ଇଂରାଜୀ ପ୍ରାଥମିକ ପଢ଼ୁଆ ପିଲା କେତେ ଦୂରରେ ସହଜେ ଦେଖିହେବ ।

ଜଣେ ଆଶା କରିବ ଯେ ଓଡ଼ିଶାରେ, ଓଡ଼ିଆ ଶାସନର ଭାଷା ହେବ । ଏହା ଏବେ କେବଳ ରାଜନୀତିକ ସ୍ଲୋଗାନ ହୋଇ ରହିଛି । ଓଡ଼ିଆକୁ ଶାସନର ଭାଷା କରିବାକୁ ତ କାହାରି ଆଗ୍ରହ ନାହିଁ । ଓଡ଼ିଆ ପିଲାଏ ଓଡ଼ିଶା ଶାସନ କ୍ଷେତ୍ରରେ ଅଗ୍ରାଧିକାର ପାଆନ୍ତୁ ଏଥିପାଇଁ ମଧ୍ୟ କାହାରି ଆଗ୍ରହ ଥିଲାପରି ଦିଶୁନାହିଁ । ଓଡ଼ିଶା ପବ୍ଲିକ ସର୍ଭିସ୍ କମିଶନ ଓ ଓଡ଼ିଶା ସେକ୍ରେଟେରିଏଟ୍ ସର୍ଭିସର ମାଧ୍ୟମ ଓଡ଼ିଆ କରିଦେଲେ, ଆପଣାଛାଏଁ ଓଡ଼ିଆ ଶିକ୍ଷାର ଭାଷା ହୋଇଯାନ୍ତା; ଇଂରାଜୀ ସ୍କୁଲମାନେ ମଧ୍ୟ ଓଡ଼ିଆ ପଢ଼ାନ୍ତେ । କିନ୍ତୁ ଇଂରାଜୀ ଭୂତଗ୍ରସ୍ତ ଶିକ୍ଷିତ ବର୍ଗଙ୍କ ଷଡ଼୍ଯନ୍ତ୍ର ହେତୁ ଏହା ସମ୍ଭବ ହୋଇ ନାହିଁ । ଓଡ଼ିଶାର ଦୁର୍ବଳ ରାଜନୀତିକ ନେତୃତ୍ୱ ଏଥିପାଇଁ ବହୁ ପରିମାଣରେ ଦାୟୀ । କର୍ଣ୍ଣାଟକରେ କନ୍ନଡ଼କୁ ସରକାରୀ ଭାଷା କରିବା ପାଇଁ ସରକାରୀ ମହଲରୁ ଆପତ୍ତି ଉଠିଲାରୁ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ଦେବରାଜ ଅର୍ସ ମୋର ସାହାଯ୍ୟ ନେଇଥିଲେ । ସେକ୍ରେଟେରିଏଟ୍‌ର ମଧ୍ୟସ୍ତରୀୟ ଛଅ ଶହ ଅଫିସରଙ୍କୁ ଦୁଇ ସପ୍ତାହ ଟ୍ରେନିଂ ଦେଇ ମୁଁ ସେକ୍ରେଟେରିଏଟର ଫାଇଲ ବ୍ୟବସ୍ଥା ତିଆରି କରିଦେଇଥିଲି ଓ ତାହାର ଫଳରେ କନ୍ନଡ଼ ସରକାରୀ ଭାଷା ହେବାରେ ଆଉ ଆପତ୍ତି ରହିଲା ନାହିଁ । ଆମ ରାଜ୍ୟରେ ଏ ଦିଗରେ କାହାରି ଉତ୍ସାହ ନାହିଁ । ଇଞ୍ଜିନିୟରିଂ ବା ଡାକ୍ତରୀ ପାଠ ପଢ଼ିବାକୁ ହେଲେ ଓଡ଼ିଶାରେ ଯେ ଓଡ଼ିଆ ଭାଷା ଜାଣିବା ଦରକାର, ଏ ବିଷୟରେ ଅଧିକ ବୁଝେଇ କହିବା ଦରକାର ନାହିଁ । ଓଡ଼ିଶାରେ ଡାକ୍ତରୀ ପରୀକ୍ଷା ପାଇଁ ୭ମ ଶ୍ରେଣୀ ସମକକ୍ଷ ଓଡ଼ିଆ ପରୀକ୍ଷା ଦେବା ବାଧ୍ୟତାମୂଳକ ଥିଲା । ବର୍ତ୍ତମାନ ତାହା କୁଆଡ଼େ ଉଠେଇ ଦିଆଯାଇଛି ।

ଓଡ଼ିଶାର ମଧ୍ୟମ ବର୍ଗ ପାଠୁଆ ଘର ପିଲାଏ ତ ଇଂରାଜୀ ଶିକ୍ଷା ପାଇଲେ । ତେଣୁ ସେମାନଙ୍କ ପାଇଁ ଏ ଓଡ଼ିଆ ପରୀକ୍ଷା ଅଡ଼ୁଆ । ମୂଳରୁ ମାଇଲେ ପିଲ ସରି, ଦେବଙ୍କ ସଙ୍ଗେ କଳି କଲା ! ମୂଳରୁ ଓଡ଼ିଆ ଉଠେଇଦେଲେ ଭଲ !

ଏହା ଫଳରେ ଅଣଓଡ଼ିଆଙ୍କ ପାଇଁ ବାଟ ସଫା । ଓଡ଼ିଆ ପିଲାଏ ଓଡ଼ିଶାରେ ମେଡ଼ିକାଲ୍ ଶିକ୍ଷା ପାଇଁ ଯେଉଁ ସୁଯୋଗପାଉଥିଲେ ସେଥିରୁ ବଞ୍ଚିତ ହେଲେ ।

ଓଡ଼ିଶା ପବ୍ଲିକ୍ ସର୍ଭିସ କମିଶନ୍‌ରେ ଅଳ୍ପ କେତେ ନମ୍ବରର ଅନୁବାଦ ଅଛି । ଏଇ ଅନୁବାଦ ଇଂରାଜୀରୁ ଓଡ଼ିଆକୁ ଅନୁବାଦ ଏବଂ ଓଡ଼ିଆରୁ ଇଂରାଜୀକୁ ଦୁଇ ପ୍ରକାର ଅନୁବାଦ ଦେଲେ ଦୁଇ ଭାଷାର ଦକ୍ଷତା ପରୀକ୍ଷା ହୁଅନ୍ତା । ବର୍ତ୍ତମାନର ସ୍ଥିତିରେ ଓଡ଼ିଆକୁ ନ୍ୟୂନ କରି ଦେଖାଯାଉଛି ।

ଓଡ଼ିଶାରେ ଛଅଟି ବିଶ୍ୱବିଦ୍ୟାଳୟ ଥିଲେ ମଧ୍ୟ କୌଣସି ଗୋଟିକରେ ଓଡ଼ିଆ ପାଇଁ ବଳିଷ୍ଠ ନେତୃତ୍ୱ ନାହିଁ । କୌଣସି ଗୋଟିକରେ ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଗୋଟିଏ ଇନ୍‌ଷ୍ଟିଚ୍ୟୁଟ୍ ହୋଇ ପାରିଲା ନାହିଁ । ଓଡ଼ିଶା ସରକାରଙ୍କ ତରଫରୁ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ପାଇଁ ଗୋଟିଏ ସଂସ୍ଥା ହୋଇ ପାରିଲା ନାହିଁ । ଓଡ଼ିଶାରେ ଇଂରାଜୀ ଭାଷା ପାଇଁ ଗୋଟିଏ ସଂସ୍ଥା ଗଢ଼ାଗଲା । ଆଦିବାସୀ ଭାଷାପାଇଁ ଗୋଟିଏ ସଂସ୍ଥା କରାଗଲା । ଅଲଗା ଅଲଗା ଏଇ ସଂସ୍ଥାଗୁଡ଼ିକରୁ ଓଡ଼ିଆ ଭାଷା ବିକାଶ ସହିତ ଯୋଡ଼ା ହୋଇ ବ୍ୟବସ୍ଥିତ ମାର୍ଗ ବାହାରିବା ସମ୍ଭବ ନୁହେଁ ।

ଓଡ଼ିଶାରେ ଓଡ଼ିଆ ପ୍ରକାଶନର ଅବସ୍ଥା ଦୟନୀୟ । ବର୍ତ୍ତମାନ ଓଡ଼ିଆ ଭାଷା କୋଙ୍କଣୀ ଓ ମୈଥିଳୀର ପର୍ଯ୍ୟାୟକୁ ଆସିବାକୁ ଆରମ୍ଭ କଲାଣି । ଓଡ଼ିଆ ପ୍ରକାଶନକୁ ଉତ୍ସାହିତ କରିବା ପାଇଁ ଓଡ଼ିଶାରେ ଲାଇବ୍ରେରୀ ଆନ୍ଦୋଳନ ଲୋଡ଼ା । ଏ ଦିଗରେ ଓଡ଼ିଶା ଷ୍ଟେଟ୍ ଲାଇବ୍ରେରୀର ପ୍ରମୁଖ ଦାୟିତ୍ୱ ରହିଛି । ଏ ଦାୟିତ୍ୱ କେତେଦୂର ତୁଲି ଯାଉଛି ସେ ବିଷୟରେ ଆତ୍ମସମୀକ୍ଷା ଲୋଡ଼ା ।

ଓଡ଼ିଶାରେ ବିଭିନ୍ନ କ୍ଷେତ୍ରରେ ଭଲ ଲୋକ ଅଛନ୍ତି । କିଛି କିଛି ଭଲ କାମ ଏଣେତେଣେ ହେଉଛି । କିନ୍ତୁ ତା ଓଡ଼ିଶାର ସମୂହ ସ୍ୱାର୍ଥକୁ ଉଠେଇବା ପାଇଁ ହେଲା ପରି ଲାଗୁନାହିଁ । ସବୁଆଡ଼େ ହତାଶା ଆଉ ନିରାଶାଭାବ । ଘର ନିଆଁ ବୋଲି ଯୋଡ଼େଇଲେ ଅଣ୍ଟି ପୋଡ଼ିବା ହିଁ ସାର ହେବ । ଏଇ ସବୁ ବିଷୟରେ ବିସ୍ତୃତ ମନ୍ଥନ ହେଲେ ମୁଁ ମୋର ଲେଖା ସାର୍ଥକ ହେଲା ବୋଲି ବିଚାରିବି ।



# ବିଜ୍ଞାନର ଜୟଯାତ୍ରା

ଆଜି ପୃଥିବୀଯାକ ବିଶ୍ୱବିଦ୍ୟାଳୟର କାରଖାନା ବିଷୟରେ ଚର୍ଚ୍ଚା ହେଉଛି । କୁହାଯାଉଛି ଯେ ଆମେ ବିଶ୍ୱବିଦ୍ୟାଳୟର ନିର୍ଦ୍ଦେଶରେ ପରିଚାଳିତ ହୋଇ ଆମର ଅର୍ଥନୈତିକ ସାର୍ବଭୌମତ୍ୱ ହରେଇବୁ । କିନ୍ତୁ ଏତିକି କହିଲେ କଥାର ଅଧା ମଧ୍ୟ କୁହାଗଲା ନାହିଁ । ଶିକ୍ଷା, ସ୍ୱାସ୍ଥ୍ୟ ଓ ସଂସ୍କୃତି ଉପରେ ବର୍ତ୍ତମାନ ଅର୍ଥନୀତିର ପରିଣାମ ଦେଖିଲେ ଘଟଣାର ଭୟାବହତା ବିଷୟରେ କିଛି ଧାରଣା ହେବ ।

ବୈଜ୍ଞାନିକ ଓ ବୈଷୟିକ ଲୋକଶକ୍ତି ଦୃଷ୍ଟିରୁ ଭାରତ ପୃଥିବୀରେ ତୃତୀୟ ସ୍ଥାନ ଅଧିକାର କରେ । ଏଥିମଧ୍ୟରୁ ଅଧିକାଂଶ ଭାରତରେ ଉପଯୁକ୍ତ ଯନ୍ତ୍ରପାତିର ଅଭାବ କାରଣ ଦର୍ଶାଇ ବିଦେଶମୁହାଁ । ଦେଶରେ ଯେଉଁମାନେ ରହିଲେ ସେମାନଙ୍କ ଭିତରୁ ଅଧିକାଂଶଙ୍କର ବିଳାତି ଡିଗ୍ରୀ । ଏଥିରୁ ଦେଖାଯିବ ଯେ ଆମ ବିଜ୍ଞାନ ବହୁ ପରିମାଣରେ ବିଦେଶ-ନିର୍ଭର । ଆମ ପ୍ରୟୋଜନରେ ଲାଗିଲାଭଳି ବିଜ୍ଞାନ ବା ବୈଷୟିକ ଜ୍ଞାନର ଅଭାବ ଦେଖିଲେ ବିଭିନ୍ନ ବିଭାଗରେ ଆମର ଅଗ୍ରଗତି ଦେଶରେ ରହିଥିବା ଓ ଦେଶପ୍ରେମରେ ଉଦ୍‌ବୁଦ୍ଧ ବିଦେଶୀ-ଫେରନ୍ତା ବୈଜ୍ଞାନିକମାନଙ୍କଦ୍ୱାରା ହିଁ ସମ୍ଭବ ହୋଇଛି ।

ଆଜିକାଲି ବିକଶିତ ଦେଶମାନଙ୍କରେ ପଢ଼ା ଖର୍ଚ୍ଚ ଏତେ ବଢ଼ିଯାଇଛି ଯେ ବିକାଶଶୀଳ ଦେଶମାନଙ୍କରୁ ଡାକ୍ତର ଇଞ୍ଜିନିୟର ନେବା ସେମାନଙ୍କ ପକ୍ଷରେ ଲାଭପ୍ରଦ । ୧୯୮୦ ମସିହା ଖର୍ଚ୍ଚକୁ ମୂଳକରି ଧରିଲେ ଭାରତ ପ୍ରାୟ ଦୁଇ ହଜାର କୋଟି ଟଙ୍କାର ଶିକ୍ଷିତ ଲୋକଶକ୍ତି କେବଳ ଆମେରିକାକୁ ହିଁ ରପ୍ତାନି କରିଛି । ପୃଥିବୀର ବିଭିନ୍ନ ଅଞ୍ଚଳର ବୁଦ୍ଧି-ଉର୍ବର ଆମେରିକା ସବୁ ବୈଜ୍ଞାନିକ ଉଦ୍ଭାବନ ପାଇଁ ଗର୍ବ କରିଥାଏ । ଏଇ ଗର୍ବର ଆଉ ଏକ ଦିଗ ହେଲା ଆମେରିକା ବାହାରର ଯେ କୌଣସି ଅଞ୍ଚଳର ବିଜ୍ଞାନର ଅଗ୍ରଗତିକୁ ବନ୍ଦ କରିବା । ଏହି କାମକୁ ଏପରି କୌଶଳ ସହକାରେ କରାଯାଏ ଯେ ତା ସହଜେ ଆଖିରେ ପଡ଼େ ନାହିଁ ।

ବିଜ୍ଞାନର ବିକାଶ ପାଇଁ ଅର୍ଥ ବରାଦ କରିବା ଏଇ ବିକାଶ ପାଇଁ ସମତାର ମାପକାଠି । ଗତ ଦୁଇବର୍ଷ ହେଲା ବଜେଟ ସେଇ ପୁରୁଣା ସ୍ତରରେ ରଖାଯାଇ ଥିବାରୁ ବିଜ୍ଞାନର ବିକାଶ ବ୍ୟାହତ ହୋଇଛି । ବର୍ତ୍ତମାନ ବିଶ୍ୱବ୍ୟାଙ୍କ ନିର୍ଦ୍ଦେଶରେ ଯେଉଁ ଖର୍ଚ୍ଚକାଟ ହେଉଛି ସେଥିରେ ଆସନ୍ତା ତିନରୁ ପାଞ୍ଚବର୍ଷ ଯାଏ ସେଇ ପୁରୁଣା ହାରରେ ଖର୍ଚ୍ଚ ବାନ୍ଧାଯିବା ପରି ଦିଶୁଛି । ଏପରି ହେଲେ ଦେଶରେ ଯେଉଁ ଟିକିଏ ବୈଜ୍ଞାନିକ ଗବେଷଣା ହେଉଛି ତାର ମୃତ୍ୟୁ ନିଶ୍ଚିତ ।

ଗତ କିଛିବର୍ଷ ଭିତରେ ଅର୍ଥର ଏପରି ଅବମୂଲ୍ୟାୟନ ଘଟିଛି ଓ ଜିନିଷ-ପତ୍ରର ଦରଦାମ୍ ଏତେ ବଢ଼ିଛି ଯେ ସ୍ଥିତିସ୍ଥାପକତା ରକ୍ଷା ପାଇଁ ୨୦ରୁ ୨୫ ପ୍ରତିଶତ ଅଧିକ ଖର୍ଚ୍ଚର ପ୍ରାବଧାନ କରିବା ଦରକାର । କେବଳ ଲାଇବ୍ରେରୀ ବହି କମ୍ବା ଦେଶୀ ବିଦେଶୀ ପତ୍ରପତ୍ରିକାର ଦରବୃଦ୍ଧି ଏତେ ଅଧିକ ହୋଇଛି ଯେ ଇଣ୍ଡିଆନ ଇନ୍‌ଷ୍ଟିଚିଉଟ୍‌ର ଖର୍ଚ୍ଚ ଗତବର୍ଷର ୫୦ ଲକ୍ଷ ଏ ବର୍ଷ କୋଟିଏ ଦଶ ଲକ୍ଷ ହୋଇଛି । ବହି ଓ ପତ୍ରପତ୍ରିକା ଗବେଷଣାର ପ୍ରାଣସ୍ରୋତ । ପଇସା ଅଭାବରୁ ଏଥିରେ ଖର୍ଚ୍ଚକାଟ କଲେ ଯେ ବିଜ୍ଞାନର ଗୁଣାତ୍ମକ ଅଧୋଗତି ହେବ ଏ ବିଷୟରେ କାହାରି ସନ୍ଦେହ ରହିବାର କାରଣ ନାହିଁ ।

ଆଉ ଗୋଟିଏ ଦିଗରୁ ଏ କଥାର ବିଚାର କରାଯାଇପାରେ । କର୍ଣ୍ଣାଟକ ସରକାର ବିଜୁଳି ଦର ଦ୍ୱିଗୁଣ ବଢ଼େଇଦେଲେ । ଫଳରେ ଯେଉଁ ଇଣ୍ଡିଆନ ଇନ୍‌ଷ୍ଟିଚିଉଟର ବାର୍ଷିକ ଇଲେକ୍‌ଟ୍ରି ଖର୍ଚ୍ଚ ପଚିଶ ହଜାର ଥିଲା ତାହା ସକାଳ ପାଇଲା ବେଳକୁ କୋଟିଏ ହେଲାଣି । ସେଇ ପୁରୁଣା ହାରରେ ଖର୍ଚ୍ଚ ବରାଦ ହେଲେ ଏ ସବୁ ସଂସ୍ଥା ଚଳିବେ କେମିତି ?

କୁହାଯାଉଛି ଯେ ପିଲାଙ୍କର ଦରମା ବଢ଼େଇ ଟଙ୍କା ଉଠେଇବା ଦରକାର । ମାନ୍ଦ୍ରାଜ ଆଇ. ଆଇ. ଟି ପିଲାଙ୍କିପାଇଁ ସାତ ହଜାର ଟଙ୍କା ସ୍ଥିର କରିଥିଲାବେଳେ ଉତ୍ତର ଭାରତର କୋର ଆଇ. ଆଇ. ଟି. ଦଶ ହଜାର ଦରମା ସ୍ଥିର କରିଛନ୍ତି । ଦରମା ବଢ଼େଇବା ସପକ୍ଷରେ ଯେ ଯୁକ୍ତି ନାହିଁ ନୁହେଁ । କିନ୍ତୁ ଗରିବ ଓ ମେଧାବୀ ପିଲାଙ୍କ ପାଇଁ ବୃତ୍ତି ବା ଆର୍ଥିକ ସାହାଯ୍ୟର ବ୍ୟବସ୍ଥା ନ କରି ଏପରି ଦରମା ବଢ଼େଇଦେଲେ କେବଳ ପଇସାଥିବା ପିଲାଏ ଏ

ସଂସ୍ଥାମାନଙ୍କରେ ପଡ଼ି ପାରିବେ । ବିଜ୍ଞାନ ସ୍ୱଚ୍ଛଳ ଓ ସମ୍ପନ୍ନ ଗୋଷ୍ଠୀର ହାତବାରିସି ହୋଇ ରହିବ । ଅର୍ଥଧନୀ ହିଁ ଜ୍ଞାନଧନୀ ଓ ସମାଜର ଅସମାନତା ଆହୁରି ବଢ଼ିଯିବ । ଆମେ ଯଦି ଧନ ପାଇଁ ବାହାର ଲୋକଙ୍କ ପାଖରେ ହାତ ପତେଇବୁ, ତେବେ ଗବେଷଣାର ବିଷୟ ପଦ୍ଧତି ଆଜି ବିଷୟରେ କଟକଣା ସେଇମାନଙ୍କ ହାତରେ ରହିବ । ଆମେ ବିଜ୍ଞାନ କ୍ଷେତ୍ରରେ ସବୁଦିନ ପାଇଁ ପରାଧୀନ ହୋଇଯିବୁ ।

ଆଜି ବିଶ୍ୱବ୍ୟାଙ୍କ ନିର୍ଦ୍ଦେଶରେ ଯେଉଁମାନେ ମାନବିକ ବିକାଶ କ୍ଷେତ୍ରରେ ଖର୍ଚ୍ଚକାଟ ଓ ଏପରି ଆର୍ଥିକ ନିୟନ୍ତ୍ରଣ ପାଇଁ ରାଜି ହେଉଛନ୍ତି ସେମାନେ ଦେଶର ଭବିଷ୍ୟତକୁ ବିଦେଶୀଙ୍କ ପାଖରେ ବନ୍ଧା ପକାଉଛନ୍ତି । ବିଜ୍ଞାନର ଜୟଯାତ୍ରା ସ୍ଲୋଗାନ ଆଢ଼ୁଆଳରେ ଦେଶର ବୈଜ୍ଞାନିକ ଗବେଷଣାକୁ ମୂଳୁ ମାରିବାର ଉଦ୍ୟମକୁ ଭବିଷ୍ୟତ କ୍ଷମା କରିବ ନାହିଁ ।



# ଲିପି

ଲିପି ଭାଷାର ଆତ୍ମା ନୁହେଁ । ଭାଷାର ଅଙ୍ଗପ୍ରତ୍ୟଙ୍ଗର ଭିତରରେ ଲିପିର ସ୍ଥାନ ନାହିଁ । ଲିପି ଭାଷାର ପୋଷାକ । ଯେମିତି ଶାଢ଼ି, ଘାଘରା, ଜନ୍ କି ସାଲୁଆର ପିନ୍ଧିଲେ ବି ଝିଅଟିକୁ ଚିହ୍ନିବାରେ ବାଧାନାହିଁ, ସେମିତି ଯେଉଁ ଲିପିରେ ଲେଖା ହେଲେ ବି ଭାଷାକୁ ଚିହ୍ନିବାରେ ଅସୁବିଧା ହୁଏ ନାହିଁ । ଖାଲି ଲିପି ଜାଣି ଭାଷା ଜାଣିନଥିଲେ ଯେମିତି ଅସୁବିଧା, ଭାଷା ଜାଣି ଲିପି ଜାଣି ନଥିଲେ ସେମିତି ଅସୁବିଧା । ପୃଥିବୀର ବହୁଭାଷା ରୋମାନ ଲିପିରେ ଲେଖା-ହେଉଛି । ଫରାସୀ, ଜର୍ମାନୀ, ସ୍ପାନିସ ଅନେକ ଭାଷା ଏମାନଙ୍କ ମଧ୍ୟରେ ପ୍ରମୁଖ । ସେହିପରି ନାଗରୀଲିପିରେ ଅନେକ ଭାଷା ଲେଖାହୁଏ । ସେମାନଙ୍କ ଭିତରେ ମରାଠୀ, ହିନ୍ଦୀ, ସଂସ୍କୃତ ଓ ବୋଡ଼ୋଭାଷା ପ୍ରଧାନ ।

ମଣିଷର ଭାଷା ମଣିଷ ସୃଷ୍ଟି ସହିତ ସମକାଳିକ ହେଲେ ହେଁ ଲେଖାର ଇତିହାସ ମାତ୍ର ପାଞ୍ଚ ଛଅ ହଜାର ବର୍ଷ ତଳୁ ଆରମ୍ଭ । ଲିପିର ଇତିହାସରେ ଅକ୍ଷର ଯେମିତି ବଦଳି ବଦଳି ଯାଇଛି କେତେ ଲେଖା ସେମିତି ଅବ୍ୟବହୃତ ହେତୁ ଲୋପ ପାଇଯାଇଛି । ଏପରି ଅନେକ ଲିପି ଅଛି ଯାହା ବର୍ତ୍ତମାନ ସୁଦ୍ଧା ପଢ଼ାଯାଇ ପାରିନାହିଁ । ଭାରତର ପ୍ରାଚୀନତମ ଲିପି ଇନ୍‌ଡସ୍ ଭେଲି ସ୍କ୍ରିପ୍ଟ ଏହା ମଧ୍ୟରେ ଅନ୍ୟତମ ।

ଅନେକ ଭାଷା ଯେମିତି ଗୋଟିଏ ଲିପିରେ ଲେଖାହୁଏ, ଗୋଟିଏ ଭାଷା ସେମିତି ଅନେକ ଲିପିରେ ଲେଖା ହେବାର ବହୁ ପ୍ରମାଣ ଅଛି । ସାନ୍ତାଳିଭାଷା ଓଡ଼ିଆ, ବଙ୍ଗଳା, ଆସାମୀ, ନାଗରୀ, ରୋମାନ ଏବଂ ଅଲଚିକି ଲିପିରେ ଲେଖାଯାଏ । କୋଙ୍କଣୀ ଭାଷା ନାଗରୀ, କନ୍ନଡ଼, ମାଲୟାଲମ୍ ଓ ରୋମାନ୍ ଲିପିରେ ଲେଖାଯାଏ । ସିନ୍ଧୀ ଭାଷା ନାଗରୀ ଓ ପର୍ସୋଆରବିକ ଲିପିରେ ଲେଖାଯାଏ । ଓଡ଼ିଆ ଭାଗବତକୁ ବଙ୍ଗଳା ଅକ୍ଷରରେ ଲେଖି ଏବେବି ମେଦିନୀପୁର ଅଞ୍ଚଳରେ ପଢ଼ାଯାଏ । ବିନୋବା ଭାବେଙ୍କ ବହି ନାଗରୀରେ ଓଡ଼ିଆ ଛପା ହୁଏ । ଅଣଓଡ଼ିଆମାନେ ଓଡ଼ିଆ ଶିଖିବା ପାଇଁ ଯେଉଁ ବହିସବୁ

ଲେଖାହୋଇଛୁ ତହିଁରେ ଅନେକ କ୍ଷେତ୍ରରେ ସେମାନ ଅକ୍ଷର ବ୍ୟବହାର କରାଯାଇଛୁ ।

ଭାଷା ବ୍ୟବହାରରେ ଯେତେ ଶୀଘ୍ର ବଦଳେ ଲେଖା ସେମିତି ବଦଳେ ନାହିଁ । ଭକ୍ତରୁ ଭକତ ଆଉ ତହିଁରୁ ଭଗତ ହେଲା । ମୁହଁର ଭାଷା ହୋଇ-ଥିଲେ ଥରେ ଚଳଣି ବଦଳାଗଲେ ପୁରୁଣା କଥାକୁ ଧରିବା ସମ୍ଭବ ହୁଅନ୍ତା ନାହିଁ । ଲେଖାରେ ଏଇ ଭିନ୍ନରୂପ ଥିବାରୁ ଏହାର ବିକାଶକ୍ରମ ଧରିବା ସମ୍ଭବ । ଗୋଟିଏ କାଳରେ ଓଡ଼ିଆରେ ଦନ୍ତ୍ୟସ, ତାଲବ୍ୟଶ, ମୂର୍ଦ୍ଧନ୍ୟଷ ମଧ୍ୟରେ ପାର୍ଥକ୍ୟ ଥିଲା; କିନ୍ତୁ ସମୟକ୍ରମେ ଆମ ଉଚ୍ଚାରଣରେ କେବଳ ଦନ୍ତ୍ୟସ ରହିଲେ ମଧ୍ୟ ଆମ ଅକ୍ଷରମାଳାରେ ତିନୋଟିଯାକ ଅକ୍ଷର ରହିଛି । ଉଚ୍ଚାରଣ ଭେଦ ନଥିଲେ ମଧ୍ୟ ଶବ୍ଦର ଐତିହାସିକ ଅର୍ଥକୁ ଅଲଗା ରଖିବାରେ (ସର : ଶର) ଏ ଗୁଡ଼ିକ ସାହାଯ୍ୟ କରୁଛି । ଆମ ଅକ୍ଷରରେ ଦୁଇଟି 'ବ' ବର୍ଗୀୟଜ ଓ ଅବର୍ଗୀୟ 'ଯ'ର ଉଚ୍ଚାରଣଗତ ଭେଦ ଲୋପ ପାଇଥିଲେ ସୁଦ୍ଧା ଆମ ଅକ୍ଷର-ମାଳା ଭିତରେ ସେମାନେ ରହିଛନ୍ତି । ସେମିତି ହ୍ରସ୍ୱ 'ଇ' ଦୀର୍ଘ 'ଈ' ହ୍ରସ୍ୱ 'ଉ' ଦୀର୍ଘ 'ଊ' 'ର' 'ଋ' ।

ଭାଷା ବଦଳୁଥିବାରୁ କୌଣସି ଲିପି ସେହି ଭାଷା ପାଇଁ ପର୍ଯ୍ୟାପ୍ତ ନୁହେଁ । ଇଂରାଜୀ ଭାଷାର ବନାନରେ ଏତେ ପ୍ରମାଦ ରହିଛି ଯେ ସେଗୁଡ଼ିକୁ ସୁଧାରିବା ପାଇଁ ବର୍ଣ୍ଣାଡ଼ ଶ ତାଙ୍କର ସମସ୍ତ ସମ୍ପତ୍ତି ଦାନ କରିଯାଇଛନ୍ତି । ଇଂରାଜୀ ଉଚ୍ଚାରଣରେ ବହୁ ସ୍ୱରବର୍ଣ୍ଣ ଥିଲେ ସୁଦ୍ଧା ସେମାନଙ୍କଠାରେ ମାତ୍ର ପାଞ୍ଚଟି ଅକ୍ଷର ଥିବାରୁ **a,e,i,o,u)** ପ୍ରତି ଅକ୍ଷରକୁ ଏକାଧିକ ମୂଲ୍ୟରେ ବ୍ୟବହାର କରାଯାଏ । **Do** ଡୁ ହେଲା ବେଳେ **Go** ଗୋ ହେବା ସାଧାରଣ ମନକୁ ବାଧେ । **Knee** ନି, **Pthysis** ଥାଇସିସ୍, **Psychology** ସାଇକୋଲଜିରେ ଯେଉଁ ଅନାବଶ୍ୟକ ପ୍ରଥମ ଅକ୍ଷର ଅଛି ତାର ଯୁକ୍ତି ଆଧୁନିକ ବ୍ୟବହାରରେ ନାହିଁ । ଏମିତି ଖାଲି ଇଂରାଜୀ କଥା କହି ବସିଲେ ପୋଥିଏ ହେବ । ତାମିଲଭାଷାରେ କ,ଖ,ଗ,ଘ ଗୁଡ଼ିକୁ ବୁଝାଇବା ପାଇଁ ଗୋଟିଏ ଅକ୍ଷର । ସେଥିପାଇଁ ଜଣେ ଲେଖିବ କାନ୍ତ, ପଢ଼ିବ ଗାନ୍ଧ, ପୁଣି ତାମିଲରେ ଲେଖିବା, ପଢ଼ିବା ଓ କହିବା ଭିତରେ ପାର୍ଥକ୍ୟ ଦେଖିଲେ କାବା ଲାଗେ । ଲେଖିବ 'ପାଟମ', ପଢ଼ିବ 'ପାଡ଼ମ୍' ଆଉ କହିବ ପାଡୌ । ଏଗୁଡ଼ିକ କିନ୍ତୁ

ନିୟମବଦ୍ଧ । ନିୟମ ଜାଣିଲେ ଅସୁବିଧା ନାହିଁ । ହିନ୍ଦୀ ଭାଷାରେ ସେମିତି, ଲେଖିବ 'ପଢ଼ଲ' 'କହନା' ଆଉ ପଢ଼ିବ 'ପେଢ଼ଲ୍', 'କେହନା' । ଆମ ଓଡ଼ିଆ ବି କମ୍ ନୁହେଁ । କ ସବୁ ଜାଗାରେ କ୍+ଅ; କିନ୍ତୁ କଟକ ଲେଖିଲ ବେଳେ କଏ ପଢ଼ିଲ କଟକ ତ କଏ ପଢ଼ିଲ କଟକ୍, ବାକ୍ସକୁ କଏ ପଢ଼ିଲ ବାକସ ତ ଆଉ କଏ ପଢ଼ିଲ ବାକ୍ସ ।

ନୂଆ ଭାଷା ଶିଖିବାରେ ନୂଆ ଲିପି ଗୋଟିଏ ଅଧିକ ବାଧା । ସେଇଥିପାଇଁ ଲିପି ନଥିବା ଭାଷାମାନଙ୍କ ପାଇଁ ନୂଆ ଲିପି ତିଆରି ନ କରି ଚଳୁଥିବା ଯେକୌଣସି ଲିପିରେ ଲେଖିବା ବୁଦ୍ଧିମତ୍ତାର କାର୍ଯ୍ୟ ହେବ । ଓଡ଼ିଶାରେ ଏହିପରି କେତେକ ଭାଷା ଅଛି ଯାହାର ସଂରକ୍ଷଣ ସାଂସ୍କୃତିକ ଦୃଷ୍ଟିରୁ ପ୍ରୟୋଜନ; ଅଥଚ ସେଗୁଡ଼ିକର ଲିପି ନାହିଁ କିମ୍ବା କେତେକଙ୍କ ପାଇଁ ନୂଆଲିପିର ଉଦ୍ଭାବନ କରାଯାଇଛି । ଏପରି ଭାଷାଗୁଡ଼ିକୁ ସେମାନଙ୍କ ସ୍ୱାର୍ଥ-ଦୃଷ୍ଟିରୁ ଓଡ଼ିଆ ଲିପିରେ ଲେଖାଯିବା ଉଚିତ । ପ୍ରଥମତଃ ଓଡ଼ିଆ ପ୍ରାଥମିକୋତ୍ତର ଶିକ୍ଷାର ମାଧ୍ୟମ ଓ ସରକାରୀ କାମର ଭାଷା ହୋଇଥିବାରୁ ଯେତେ ଶୀଘ୍ର ସମ୍ଭବ ଓଡ଼ିଆକୁ ଆୟତ୍ତ କରନ୍ତି ସେତେ ଭଲ । ଦ୍ୱିତୀୟତଃ ଓଡ଼ିଆ ଲିପିରେ ଟାଇପ, ଟେଲିଟାଇପ, ଟେଲିଗ୍ରାଫି ଓ କମ୍ପ୍ୟୁଟର ବ୍ୟବହାରର ବ୍ୟବସ୍ଥା ହୋଇଥିବାରୁ ଏସବୁ ଶୀଘ୍ର ସେହି ସେହି ଭାଷା ପାଇଁ ଲାଗୁ ହୋଇପାରେ ।

ନୂଆ ଲିପି ଶିଖିବାକୁ ଅନେକ ପ୍ରକାର ଉପାୟ କୁହାଯାଇଛି । ଗୋଟିଏ ହେଉଛି ଧ୍ୱନିକ୍ରମରେ ଅକ୍ଷର ଶିକ୍ଷା । ଦ୍ୱିତୀୟଟି ହେଉଛି ଅକାର କ୍ରମରେ ଅକ୍ଷର ଶିକ୍ଷା । ଏହା ଅଭିଧାନର ଅକ୍ଷର ନିୟମ ହେତୁ ଏପରି ଶିଖିବା ପଛରେ ବଳିଷ୍ଠ ଯୁକ୍ତି ଅଛି । ଏହାର ସାମାନ୍ୟ ପରିବର୍ତ୍ତନରେ ଅ'ରୁ ଅଜଗର ବା **A for Apple** ପରି ଜଣା ଶବ୍ଦ ଜରିଆରେ ଅକ୍ଷର ଶିକ୍ଷା । ତୃତୀୟତଃ ମଣିଷ ମନରେ ଉତ୍ତେଜନା ସୃଷ୍ଟି କରିପାରୁଥିବା ଶବ୍ଦକୁ ଧରି ଭାଷା ଶିଖିଲ ବେଳେ ସେଇ ଶବ୍ଦକୁ ଧରି ଅକ୍ଷର ଶିକ୍ଷା । ଅଖିଆ, ଉପାସ, ଗରିବ ପରି ଶବ୍ଦକୁ ଧରି ଅକ୍ଷର ଶିଖିବା ଏହାର ଉଦାହରଣ । ବର୍ଣ୍ଣବୋଧରେ ଶବ୍ଦରୁ ବାକ୍ୟକୁ ଗତି ଯେପରି କଟକ ନଗର, ଧବଳ ଟଗର । ବିଭିନ୍ନ ଭାଷାରେ ଯୁକ୍ତିହୀନ ଭାବରେ ଶବ୍ଦ ଦେଇ ଅକ୍ଷର ଶିଖାଇବାର ଉଦାହରଣ ବିରଳ

ନୁହେଁ । ଓଡ଼ିଆରେ ମା' ରମା, ବର, ରମାର ରବର; ହିନ୍ଦୀରେ ଲାଲ୍, ତାଲା, ଲା; ମରାଠୀରେ କମଲ ଫୁଲ ବଢ୍ ଏହି ପର୍ଯ୍ୟାୟର; କିନ୍ତୁ ଅତିଶୀଘ୍ର ଅକ୍ଷର ଚିହ୍ନି ଶିଖିବା ପାଇଁ ଅକ୍ଷର ସାମ୍ୟ ଓ ବିଷମତାଭିତ୍ତିରେ ଏହାକୁ ଦେଖିବା ପ୍ରକୃଷ୍ଟ ପନ୍ଥା ବୋଲି ଗଣାଯାଇଛି । ମନେକର ଅକ୍ଷର ସମାନତା ଦୃଷ୍ଟିରୁ ବ.କ.ଦ ଗୋଟିଏ ଗୋଷ୍ଠୀର । ବ ଓ କ ଭିତରେ ପାର୍ଥକ୍ୟ ବାହାରର ଆଙ୍କୁଡ଼ି ଏବଂ ବ ଓ ଦ ଭିତରେ ପାର୍ଥକ୍ୟ ଉପର ଗୋଲେଇର ଆରମ୍ଭ ସ୍ଥାନ । ଏଇପରି ଭାବରେ ସମାନତା ଓ ବିସମତାକୁ ଧରି ବଦ, ଦବ, ବକ, ଦକ, କବା ଆଦି ଶବ୍ଦ ଗଢ଼ି ଅକ୍ଷର ଚିହ୍ନିବା ସହଜ ହୋଇଥାଏ । ଏପରି ଅକ୍ଷର ଚିହ୍ନିଗଲେ ତାକୁ ଅଭିଧାନ କ୍ରମରେ ସଜେଇ ମନେରଖିବା ଦରକାର ।

ଥରେ ଲେଖା ହେଲେ ତାହା ସହଜରେ ନ ବଦଳୁଥିବାରୁ ଲିପିର ସଙ୍କେତ ହେଉଛି 'ଅକ୍ଷର' । ସଞ୍ଚାରର ଦୁଇଟି ପ୍ରକ୍ରିୟା ଅଛି, ଯଥା— କହିବା ଓ ଲେଖିବା । କିନ୍ତୁ ଆଜି ଲେଖା କହିବା ଉପରେ ଏତେ ପ୍ରାଧାନ୍ୟ ଲାଭ କଲାଣି ଯେ ଲେଖା ନଜାଣିଥିବା ଲୋକଙ୍କୁ ଲେଖା ଜାଣିଥିବା ଲୋକଙ୍କ ତୁଳନାରେ ଅଳ୍ପ ବିକଶିତ ବୋଲି ଗଣାଯାଉଛି—ଏହା ଏକ ଦୁର୍ଭାଗ୍ୟର କଥା ।



# ପୃଥିବୀର ପରିବେଶ

ଆଜି ପୃଥିବୀରେ ଏକ ଅଦ୍ଭୁତ ଅବସ୍ଥାର ସୃଷ୍ଟି ହୋଇଛି । ଆମେରିକା କହୁଛି ଯେ ଆମ ଜୀବନଧାରଣର ମାନ ଆନ୍ତର୍ଜାତିକ ବିଚାରର ବିଷୟ ନୁହେଁ । ଜର୍ମାନୀ ମଧ୍ୟ ସେଇ କଥା କହୁଛି । ଗରିବ ଦେଶ ପାଇଁ ସେ ଆପଣା ଜୀବନ-ଧାରଣ ମାନ କମେଇବାକୁ ରାଜି ନୁହେଁ । ଆମେରିକା ଓ ଜର୍ମାନୀକୁ ଛାଡ଼ି ପୃଥିବୀର ଆର୍ଥିକ ସ୍ଥିତିର ବିଚାର ଅସମ୍ଭବ । ଅଥଚ ଏଇ ଦେଶମାନଙ୍କର ମତାମତ ପୃଥିବୀ ପାଇଁ ଭଲ ନୁହେଁ ।

ଆଉ ଗୋଟିଏ ଦିଗରୁ କଥାଟିକୁ ଦେଖାଯାଉ । ସେମାନଙ୍କର ଦେଶର ମାନ ପୃଥିବୀର ବିଚାରବସ୍ତୁ ନୋହିଲେ ସୁଦ୍ଧା ପୃଥିବୀର ଅନ୍ୟ ଦେଶମାନଙ୍କର ଜୀବନ ମାନ ସେମାନଙ୍କର ବିଚାର୍ଯ୍ୟ । ଏହା ବଢ଼େଇବାର ଦାୟିତ୍ୱ ସେମାନଙ୍କର ନୁହେଁ । ଏହା କମେଇ ରଖିଲେ ଯାଇ ସେମାନଙ୍କର ବଢ଼ନ୍ତ ଜୀବନମାନକୁ ଧରି ରଖି ହେବ ।

ଯେଉଁ ବିକଶିତ ଦେଶମାନେ ଆବର୍ଜନା ସୃଷ୍ଟି କରି ପୃଥିବୀର ପରିବେଶକୁ ଦୂଷିତ କରିଛନ୍ତି, ସେମାନେ ତାକୁ ସୁଧାରିବାକୁ ମୂଲ୍ୟ ଦେବାକୁ ତିଆର ନୁହନ୍ତି । ବିକାଶଶୀଳ ଦେଶମାନେ ଏ ବୋଝ ମୁଣ୍ଡେଇବା ସେମାନଙ୍କର ଇଚ୍ଛା । ବିକାଶଶୀଳ ଦେଶମାନଙ୍କରେ ଉପଭୋକ୍ତାବାଦ ପାଇଁ ଯେଉଁ ପ୍ରତିଯୋଗିତା ଲାଗିଛି, ତା ଭିତରେ ସାଧାରଣ ଲୋକର ଦମୁଠା ଭାତ କି ଖଣ୍ଡେ କୁଟିର ପ୍ରଶ୍ନ ହଜିଯାଉଛି । ସେଠି ପୃଥିବୀର ଭବିଷ୍ୟତ ଚିନ୍ତା ପାଇଁ ସ୍ଥାନ କାହିଁ ? ସେମାନେ ଏକାଠି ହେଲେ ଯେ ବିକଶିତ ଦେଶମାନଙ୍କୁ ବାଧ୍ୟ କରିପାରିବେ ଏ ଜୋର ସେମାନଙ୍କର ନାହିଁ । ଏସବୁ ଦେଶମାନଙ୍କରେ ସାଧାରଣ ଲୋକ ଓ ନେତୃତ୍ୱ ଭିତରେ ବିଭାଜନ ଏତେ ବେଶି ଯେ ଦେଶର ସାଧାରଣ ସ୍ୱାର୍ଥ ପାଇଁ ଏକାଠି ହେବାର ସାମର୍ଥ୍ୟ ଏମାନେ ହରେଇ ବସିଛନ୍ତି ।

ଯେଉଁ ଯେଉଁ ଦେଶ ବିକାଶ ପଥରେ ଯେତେ ଆଗୁଆ, ସେ ଦେଶ-ମାନଙ୍କରେ ବେକାରୀ ସେତିକ ବଢ଼ିବାରେ ଲାଗିଛି । ଯେଉଁ ଦେଶମାନେ

ମୂଳଧନ ବଳରେ ଆଗକୁ ବଢ଼ି ଚାଲିଛନ୍ତି, ସେମାନଙ୍କୁ ଏହା ହୁଏତ ଏତେ କାଟୁ ନାହିଁ । କିନ୍ତୁ ଯେଉଁ ଦେଶ ଶ୍ରମଶକ୍ତି-ନିର୍ଭର ସେ ଦେଶମାନଙ୍କର ଅବସ୍ଥା ଗାଆଣି ଗାଇଲେ ସରିବ ନାହିଁ । ଏକାଭିଳ ବିକାଶ ଯୋଜନା କରି ସବୁ ଦେଶକୁ ବିକଶିତ କରିବାର ସ୍ୱପ୍ନ ଦେଖେଇ ସବୁଦିନ ପାଇଁ ସେମାନଙ୍କୁ ଅବିକଶିତ ରଖିଲେ ଯାଇ କେତେକ ଦେଶର ବିକାଶ ସମ୍ଭବ । ଯେତେଦିନ ଯାଏ ବିକାଶଶୀଳ ଦେଶର ଶାସକମାନେ ବିକଶିତ ଦେଶମାନଙ୍କର ଏଇ ଚକ୍ରାନ୍ତ ନ ବୁଝିଛନ୍ତି ସେତେଦିନ ଯାଏ ସେମାନଙ୍କର ବିକାଶ ଅସମ୍ଭବ । ଉପଭୋକ୍ତାବାଦ ପାଇଁ ପ୍ରତିଯୋଗିତା ନୁହେଁ, ଆଭ୍ୟନ୍ତରୀଣ ସମତା ସୃଷ୍ଟିରେ ହିଁ ଯେ ସାମୂହିକ ବିକାଶ ଏ କଥା ନବୁଝିଲେ ବିକାଶର ମୂଳସୂତ୍ର ହଜିଯିବ ।

ଏଇ ପରିପ୍ରେକ୍ଷୀରେ ଭାରତୀୟ ବିକାଶର ଦୁଇଟି କଥା ବିଚାର କରାଯାଉ । ଗୋଟିଏ ହେଉଛି ଋଣ । ଆମକୁ ପାଞ୍ଚ ସାତ ବିଲିୟନ ଡଲାର ଋଣ ମିଳିଗଲା ବୋଲି ଅନେକ ଆନନ୍ଦରେ ଅଧୀର । ଆମ ଋଣ ଏପରି ଅବସ୍ଥାରେ ପହଞ୍ଚିଲାଣି ଯେ ଭବିଷ୍ୟତରେ ଜନ୍ମ ହେବା ପିଲାଙ୍କ ମୁଣ୍ଡପିଛା ଋଣ ହିସାବ କଲେ ମୁଣ୍ଡରେ ହାତ ଦେବାକୁ ହେବ । ପୁଣି ଋଣ ନେଲେ ସେଇ ଋଣର ସୁଧ ଦେବାକୁ ଅଧିକ ଋଣ ଦରକାର । ଇଏ କୋଉ ବିକାଶ ? କିଛି ଲୋକଙ୍କର ଉପଭୋଗ ଲୋଭ ମେଣ୍ଟାଇବାକୁ ମଜଲିସ୍ ଜିନିଷ ଆମଦାନି କରିବାରୁ ଏଇ ଋଣର ଆରମ୍ଭ । ଆଉ ଏହାର ଶେଷ କେଉଁଠି ? ଋଣ କମେଇବା ଅର୍ଥନୀତି ବଦଳରେ ଋଣ ବଢ଼େଇ ଦେଶକୁ ବନ୍ଧା ପକେଇ ଦେଇ ନେତାମାନେ ଖଲାସ । ଏ ଦେଶକୁ ରଖିବ କିଏ ?

ଆଉ ଗୋଟିଏ କଥା ହେଲା, ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଆମ ଦେଶକୁ ଖୋଲା ନିମନ୍ତ୍ରଣ । ଏହା ଜଣାକଥା ଯେ ଯେଉଁ ଦେଶରୁ ମୁନାଫା ଯେତେ ଅଧିକ ମିଳିବ ବହୁ ରାଷ୍ଟ୍ରୀୟ କମ୍ପାନୀମାନେ ସେଇ ଦେଶକୁ ଆପଣେଇବେ । ଏଇ ମୁନାଫା ଆପଣା ଦେଶରୁ ବାହାରକୁ ଚାଲିଗଲେ ଦେଶର ଶକ୍ତି କମିଯିବ । ପୁଣି ବହୁ ଜାତୀୟ କମ୍ପାନୀ ସହିତ ପ୍ରତିଯୋଗିତାରେ ନପାରି ଦେଶୀ ପ୍ରଚେଷ୍ଟା ମରିଯିବେ । ଏହା ଫଳରେ ସ୍ୱାବଲମ୍ବନ ଓ ସ୍ୱାଭିମାନ ଦୁଇଟିଯାକ ଯିବ । ଗାନ୍ଧୀ, ଆମ୍ବେଦକର ଓ ମହମ୍ମଦ ଅଲି କରି ହଜାର ହଜାର ଲୋକ ଯୋଷି

ହେଉଛନ୍ତି । ବହୁ ରାଷ୍ଟ୍ରୀୟ କମ୍ପାନୀ ପଶିଲେ ସେମାନେ ବେକାର ହେବେ । ଭାରତର ବିଭିନ୍ନ ଅଞ୍ଚଳରେ ତନ୍ତୀ ଓ ମାଛଧରା କେଉଟ ପ୍ରତିଦିନ ଉଚ୍ଛନ୍ନ ହେଉଛନ୍ତି । ହାତକାମ ଉତ୍ପାଦ ଅଭାବରେ ଲୋପ ପାଇବାକୁ ବସିଲାଣି । ଆମ ସଂସ୍କୃତିର ପ୍ରଧାନ ଶକ୍ତି ହସ୍ତଶିଳ୍ପ ଆମକୁ ବିଦେଶରେ ଖୋଜିବାକୁ ହେବ । ଏଇ ବା କି ବିକାଶ ?

ଆଜି ଭାରତର ସରକାରୀ ଓ ବିରୋଧୀଦଳ ଏକାଠି ହୋଇ ଜନତା ବିରୋଧୀ ନୀତି ଅନୁସରଣ କରୁଛନ୍ତି । ନିର୍ବାଚନ ଖର୍ଚ୍ଚ ଡରରୁ ହେଉ ଅଥବା ଆପଣା ସଂକୀର୍ଣ୍ଣ ସ୍ୱାର୍ଥସାଧନ ଯୋଗୁଁ ହେଉ, ବିରୋଧୀଦଳ ସରକାର ଅନୁସରଣିଆ ହୋଇପଡ଼ିଛି । ତେଣୁ ଆଜି ଲୋକଙ୍କ ପାଇଁ କହିବାକୁ କେହି ନାହିଁ । ଲୋକେ ଆପଣା ଶକ୍ତି ବିଷୟରେ ଅବହିତ ନୋହିଲେ ଏଇ ଦୁଷ୍ଟଚକ୍ରରୁ ମୁକ୍ତି ନାହିଁ ।



# ପଶ୍ଚିମ ଆଉ ପୂର୍ବ

କୋରାନରେ ଲେଖା ଅଛି, "ଯଦି ଭଗବାନ ମଣିଷର ଯାହା ପ୍ରାପ୍ୟ ସେହି ଅନୁସାରେ ତାକୁ ଦଣ୍ଡ ଦିଅନ୍ତେ, ତେବେ ଯେ ପୃଥିବୀ ଉପରେ ଜନ୍ତୁଟିଏ ସୁଦ୍ଧା ଛୁଡ଼ି ନ ଥାନ୍ତେ।" ମଣିଷ ପ୍ରତି ଭଗବାନଙ୍କର ଦୁର୍ବଳତା ଯୋଗୁ ହେଉ ବା ତାଙ୍କର କମଜୋର ପଣିଆ ହେତୁ ହେଉ ସିଏ ହୁଏତ ଦଣ୍ଡ ଦିଅନ୍ତି ନାହିଁ। ଦେଲେ ତାହା ମଣିଷର ଦୋଷ ତୁଳନାରେ ପର୍ଯ୍ୟାପ୍ତ ନୁହେଁ। ହିନ୍ଦୁ ଧର୍ମ ଶାସ୍ତ୍ରମାନଙ୍କରେ ଆପଣା କର୍ମର ଫଳ ଭୋଗ ଜନ୍ମ ଜନ୍ମାନ୍ତରେ ମଧ୍ୟ ଲାଗିଥାଏ। ଧର୍ମ ନକଡରୁ କାହାର ଉଦ୍ଧାର ନାହିଁ।

ଧର୍ମ ଓ ଭଗବାନଙ୍କୁ ବସ୍ତୁର ସୀମାର ବାହାରେ ରଖିଲେ ବାକି ରହିଲା ମଣିଷର ରାଜ୍ୟ। ମଣିଷର ଅହଙ୍କାର ଅପରକୁ ସାନ କରେ। ବଳୁଆ ନିବଳୁଆ ଉପରେ ରାଜୁତି କରେ। ଚାଲାକ ଚତୁର ସାଧାରଣ ମଣିଷକୁ ଠକେଇ ଆପଣାର ବଡ଼ତ୍ୱ ଘୋଷଣା କରେ। ଅହଙ୍କାରର ଗୋଟିଏ ଦିଗ ଦେହବୋଧ। ଆପଣା ଦେହ, ତାକୁ ସଜେଇବାର ସରଞ୍ଜାମ, ମାଂସର ଭୋକ ମେଣ୍ଟାଇବାର ଦାବି, ଦେହରୁ ସୁଖ, ଆଉ ସୁଖ ପାଇଁ ପଇସା ରୋଜଗାର—ଇଏ ହେଲା ଗୋଟିଏ ଧାରା। ଏହାର ଏକ ବିକଳ୍ପ ହେଲା ଯେ ଗରିବ, ଦୁଃଖୀ-ରଙ୍କି, ଭୋକିଲା, ବାସହୀନ ଏମାନେ ତ ଦିଶନ୍ତି ନାହିଁ, ଏମାନଙ୍କ ପ୍ରତି ଯେ ଅନ୍ୟାୟ କରାଯାଇଛି ଏକଥା ମଧ୍ୟ ମନକୁ ଆସେ ନାହିଁ। ଫଳରେ ଏ ଅହଂର ଲଢ଼େଇରୁ ହିଂସାର ସୃଷ୍ଟି। ହିଂସା ହେଲେ ଯାଇ ସାଧାରଣ ମଣିଷର ଘୁମ ଭାଙ୍ଗେ। ହିଂସା ନୋହିଲା ଯାଏ ପୃଥିବୀ କାଲା।

ସାର୍ତ୍ରଙ୍କ ଭାଷାରେ କହିଲେ, "ମଣିଷ କିଛି ଇଚ୍ଛା କରି ପାରିବ ନାହିଁ, ଯେତେବେଳ ପର୍ଯ୍ୟନ୍ତ ସେ ନ ବୁଝିଛି ଯେ ସେ ନିଜ ବ୍ୟତୀତ ଅନ୍ୟ କାହାରି ଉପରେ ଭରସା କରି ପାରିବ ନାହିଁ।" ଏଇ ଆପଣା ଉପରେ ଭରସାରୁ ବଡ଼ନ୍ତା ଆଶା ଆଉ ନୈତିକ ଅସନ୍ତୋଷ। ଏଇଥିରୁ ଆପଣା ସାର୍ଥକ କାମ। ଯେହେତୁ ଆପଣା ବ୍ୟତୀତ କାହାରି ଉପରେ ଭରସା ନାହିଁ, ତେଣୁ ଆଉ କାହା ପାଇଁ କାମ କରିବା ପ୍ରଶ୍ନ ବା ଉଠୁଚି କେଉଁଠୁ?

ପଶ୍ଚିମର ଇତିହାସରେ କାମ ପ୍ରତି ଘୃଣା ଲିପିବଦ୍ଧ । ଗ୍ରୀକମାନେ କାମକୁ ଅଭିଶାପ ମଣୁଥିଲେ । ହୋମରଙ୍କ ମତରେ, "ଈଶ୍ବର ମଣିଷକୁ ଘୃଣା କରନ୍ତି । ସେଇ ହେତୁରୁ ସେ ମଣିଷକୁ କାମ କରିବାର ଅଭିଶାପ ଦେଇଛନ୍ତି ।" ବାଇବେଲ ମତରେ, "କାମ ହେଉଛି ଈଶ୍ବରଙ୍କ ଅଭିଶାପ, ଯାହା ଆଦମ ଓ ଇଭଙ୍କର ଅବାଧ୍ୟତା ଓ ଅକୃତଜ୍ଞତାର ଦଣ୍ଡ ।" ଇହୁଦୀମାନଙ୍କର ଧର୍ମଗ୍ରନ୍ଥ ତାଲମୁଦ୍‌ରେ କୁହାଯାଇଛି, "ଯଦି ମଣିଷ ପଶୁପକ୍ଷୀଙ୍କ ପରି ଆପଣା ଆହାର ଯୋଗାଡ଼ କରି ନ ପାରେ, ଆଉ ସେଥିପାଇଁ ତାକୁ କାମ କରିବାକୁ ପଡ଼େ ତେବେ ଏହା ପାପର ଫଳ ।" ଇହୁଦୀମାନେ ଈଶ୍ବର ଇଚ୍ଛା ବିଷୟରେ ଆପଣା ମତର ଯେପରି ବୈପ୍ଳବିକ ପରିବର୍ତ୍ତନ ଘଟେଇଲେ ତାହା ପରବର୍ତ୍ତୀ କାଳର କଥା । ପ୍ରୋଟେଷ୍ଟାଣ୍ଟମାନେ ଆସିଲା ପରେ ପଶ୍ଚିମରେ କାମ ପ୍ରତି ମନୋଭାବ ବଦଳିଲା । ମାର୍ଟିନ ଲୁଥର କହିଲେ କାମ ମାଧ୍ୟମରେ ହିଁ ଈଶ୍ବରଙ୍କ ପ୍ରକୃତ ସେବା ସମ୍ଭବ । ପ୍ରକୃତ ପକ୍ଷରେ କାଲ୍‌ଭିନିଷ୍ଟମାନେ କାମକୁ ଅର୍ଥକରୀ କହି ଲୁଧ ଓ ଲଭ ସହିତ ଏହାକୁ ଯୋଡ଼ି ପୁଞ୍ଜିବାଦର ମୂଳଦୁଆ ପକେଇଲେ ।

କିନ୍ତୁ ପୂର୍ବରେ, ବିଶେଷକରି ଭାରତରେ କାମ ହେଉଛି ଯୋଗ । ଧର୍ମ, ଅର୍ଥ, କାମ, ମୋକ୍ଷ କର୍ମ ସଂଯୁକ୍ତ । କିନ୍ତୁ ଏଇ କର୍ମ ପୁଣି ବାସନା ବିରହିତ । ଫଳ ଇଚ୍ଛା ବିବର୍ଜିତ । କର୍ମ ଆପଣା ପାଇଁ ନୁହେଁ । ସମାଜ ଧର୍ମର ରକ୍ଷା ପାଇଁ । କାମରେ ପ୍ରତ୍ୟେକର ଅଧିକାର ଅଛି କିନ୍ତୁ ଫଳରେ ନାହିଁ । ଏହାହିଁ ତ ଗୀତାର ଶିକ୍ଷା । ନିଷ୍କାମ କର୍ମ ଖାଲି ବ୍ୟକ୍ତିକୁ ନୁହେ, ସମାଜକୁ ଉନ୍ନତ କରେ । ଏଇଥିରୁ 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ' ଭଳି ଚିନ୍ତାର କଳନା । ବ୍ୟକ୍ତି ସହିତ ବ୍ୟକ୍ତି ଯୋଡ଼ି ହୋଇ ବସୁଧୈବ କୁଟୁମ୍ବକଂର କଳ୍ପନା ।

ପଶ୍ଚିମର ଚିନ୍ତା ରୈଖିକ । ପ୍ରତ୍ୟେକ ପଦରେ ତୁମେ ଅଥବା ମୁଁ ର ଲଜିକ୍ । 'ଏହି ଅଥବା ମଣିଷକୁ ବାଦ ଦିଏ ।' ଭାରତର ଲଜିକ୍ ଆମେ ଦୁହେଁ ଏବଂ ଏହା ମଣିଷ ସାଙ୍ଗରେ ମଣିଷକୁ ଯୋଡ଼େ ।

ଯେଉଁମାନେ ଭାରତ ସବୁ ଚିନ୍ତା, ଆଚାର, ବିଚାରକୁ ମଧ୍ୟଯୁଗୀୟ କହି ଫୋପାଡ଼ ଦେଇ ପଶ୍ଚିମୀ ଆଚାରକୁ ଆଧୁନିକ କହି ଆବୋରି ବସନ୍ତି

ସେମାନେ ଯେ କେତେ ଅଶିକ୍ଷିତ ଏଇ କଥାରୁ ବୁଝି ହେବ । ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସ କହିଥିଲେ, "ସକଳ ବୈଷ୍ଣବ ପୂଜିବ ଆପଣା ସ୍ୱଭାବ ନ ଛାଡ଼ିବ ।" ଗାନ୍ଧି କହିଥିଲେ, "ମୁଁ ମୋର ଦୁଆର ଝରକା ଖୋଲି ରଖିବି ଯାହା ଫଳରେ ସବୁ ଆଡ଼ର ପବନ ମୋ ଘରେ ସ୍ୱଚ୍ଛନ୍ଦରେ ବୁଲି ପାରିବ । କିନ୍ତୁ ଏ ପବନରେ ମୋ ଗୋଡ଼ ଭୁଇଁଛଡ଼ା ହେବାକୁ ଦେବିନାହିଁ ।" ଆଜି ଯେତେବେଳେ ପଶ୍ଚିମୀ ଚିନ୍ତା ଆମକୁ ଆଚ୍ଛନ୍ନ କରିବାକୁ ବସିଛି, ସେତେବେଳେ ଆମେ ଆମର ଅସ୍ମିତା ବୁଝିବା ଏକାନ୍ତ ପ୍ରୟୋଜନ ହୋଇ ପଡ଼ିଛି । ଆଧୁନିକତା ନାଁରେ ଆମେ ଯଦି ଆମ ଦୁଆର ଶୋଷକ, ଚଞ୍ଚକଙ୍କ ପାଇଁ ଖୋଲିଦବା ତେବେ ଆମ ଗୋଲାମି ପାଇଁ ଆମେ ହିଁ ଦାୟୀ ହେବା ।



# ସମାଜ ସଚେତନତା

ବଙ୍ଗଳାର ସୁନାମଧନ୍ୟା ଲେଖିକା ନବନୀତା ଦେବସେନଙ୍କ ସାଙ୍ଗରେ କଥା ହେଉଥିଲି । ଲେଖାଲେଖି କଥା ପଡ଼ିଲା । ସିଏ କହିଲେ ଆମେ ସ୍ତ୍ରୀ । ଆମେ ହୀନମାନିଆ ହେଉଛୁ । ପୁରୁଷ ଆମକୁ ହୀନମାନ କରୁଛି । ତେଣୁ ପୁରୁଷକୁ ମାର । ନୋହିଲେ ଗରିବ ମୂଲିଆ ମଜଦୁର ଶୋଷିତ ହେଉଛନ୍ତି । କଳକାରଖାନା ମାଲିକ ତାଙ୍କୁ ଶୋଷଣ କରୁଛନ୍ତି । ତେଣୁ ସେମାନଙ୍କୁ ମାର । ହରିଜନ ଆଦିବାସୀ ସମାଜର ସବୁଠାରୁ ତଳସ୍ତରର ଲୋକ । ବ୍ରାହ୍ମଣ କାୟସ୍ଥ ସେମାନଙ୍କୁ ଦବେଇ ରଖିଛନ୍ତି । ସେମାନଙ୍କୁ ମାର । ବାପ ଅତ୍ୟନ୍ତ ଅତ୍ୟାଗ୍ରହୀ । ପିଲାମାନଙ୍କୁ ଗଧ ଶାସନ କରି ରଖିଛି । ତେଣୁ ବାପକୁ ମାର । ଏସବୁ ନୋହିଲେ କ୍ଷମତାରେ ଥିବା ଜ୍ୟୋତି ବସୁ, ନରସିଂହ ରାଓ କିମ୍ବା ପ୍ରେସିଡେଣ୍ଟ ବୁଶ୍‌ଙ୍କୁ ମାର । ଏଇ ମାରାମାରି ବ୍ୟାପାରେ କ'ଣ ଜୀବନ ନାହିଁ ? ମଣିଷଙ୍କର ସାନ ସାନ ହସଖୁସିକୁ ନେଇ ଲେଖିଲେ ସେଇ ଲେଖା ସମାଜ ସଚେତନ ନୁହେଁ ବୋଲି ଗାଳି ଦିଆଯାଉଛି କାହିଁକି ?

ମୋ ପାଖରେ ଏ ପ୍ରଶ୍ନର ଉତ୍ତର ନଥିଲା କି ନାହିଁ । ଶାସନ ଓ ଶୋଷଣ ଆମ ମନକୁ ଏପରି ଆଚ୍ଛନ୍ନ କରିଛି ଯେ ତା ଭିତରେ ଯେ ମଣିଷ ବଞ୍ଚିଛି ଏ କଥା ଆମେ ଭୁଲିଗଲୁଣି । ସାରଳା ସାହିତ୍ୟ ସଂସଦରେ ଫଲ୍ଗୁନନ୍ଦଙ୍କୁ ଉପାସନ ଦିଆଗଲା । ମନେହେଲା ସତେ ଯେମିତି ଏହା ଏକ ବ୍ୟତିକ୍ରମ । ଫଲ୍ଗୁନନ୍ଦଙ୍କ ପରି ଯେଉଁମାନେ ମଣିଷ ଓଠରେ ଟିକିଏ ହସ ଫୁଟାଇବାର ସାଧନା କରିଛନ୍ତି, ସେମାନଙ୍କ ମୂଲ୍ୟ ସ୍ୱୀକାର କରିବାରେ ସମାଜ ଏତେ କୁଣ୍ଠିତ କାହିଁକି ? ସାରଳା ସାହିତ୍ୟ ସଂସଦ ଆପଣାର ଏଇ ସ୍ୱାତନ୍ତ୍ର୍ୟ ବଜାୟ ରଖିଲେ ଇତିହାସରେ ଆପଣା ନାଁ ରଖିବେ ।

କଥା ହେଉଛି ଏଇ ସମାଜ ସଚେତନତା କ'ଣ ? କେଉଁ ସମାଜ ବିଷୟରେ ଆମେ ସଚେତନ ହେବା ? ଉପର ଆଉ ତଳ ସମାଜ ଭିତରେ ପାର୍ଥକ୍ୟ ଏତେ ବେଶୀ ଯେ ତଳରୁ ଉପରକୁ ଚାହିଁଲେ ଟେକା ଖସି ପଡ଼ିବ, କିଛି ଦିଶିବ ନାହିଁ । ପୁଣି ଉପରୁ ତଳକୁ ଚାହିଁଲେ ମଥାର ଘୂରୁଣି ଭେଦ ଦୃଷ୍ଟି

ତଳକୁ ପହଞ୍ଚିବ ନାହିଁ । ତଳେ ବହୁ ଭାଷା, ବହୁ ଜାତି, ବହୁ ମତ, ବହୁ ତନ୍ତ୍ରୀ । ଉପରେ ଜାତୀୟ ସମ୍ବଳ, ଆଧୁନିକତା ଓ ପ୍ରଗତିର ମୁଖା ତଳେ ଏହି ସବୁ ବିଭିନ୍ନତା ଘୋଡ଼େଇ ହୋଇଯାଇଛି । ଉପରର ସମ୍ପନ୍ନ ସମାଜ ତଳର ଗରିବ ରେଖା ତଳର ଲୋକଙ୍କୁ ଚହ୍ନିବା ଅସମ୍ଭବ ହୋଇଗଲାଣି । ଏପରି ଅବସ୍ଥାରେ ଯଦି ପ୍ରତ୍ୟେକ କେବଳ ଆପଣା ଆପଣା ଖଣ୍ଡ ବିଷୟରେ ସଚେତନ ହୁଅନ୍ତି ତେବେ ଏହା ସମାଜ ଭାଙ୍ଗିବା ଦିଗରେ ଗତି ।

ବିଜ୍ଞାନ ଅହଂକାରରେ ଅନ୍ଧ ମଣିଷ ବ୍ୟକ୍ତି ସ୍ୱତନ୍ତ୍ର । ଏଠି ସମସ୍ତଙ୍କୁ ଜିଣିବାର ଭାବନା; ସମାଜ, ପରିବେଶ, ସବୁ ଉପରେ ଆପଣା ବିଜୟ ପତାକା ଉଡ଼େଇବାର ଦମ୍ଭ । ଏଠି 'କଟପୂବ ମତେ ହି ମେ ସକଲୋକମ୍ ହିତମ୍' ବା 'ସର୍ବେ ଭବନ୍ତୁ ସୁଖିନଃ'ର କଳନା ଆସିବ କାହୁଁ ? ସମାଜ ସଚେତନତା ବ୍ୟକ୍ତିକେନ୍ଦ୍ରିକ ହେଲେ କମ୍ବା ବ୍ୟକ୍ତିର ସ୍ୱାର୍ଥସିଦ୍ଧି ପାଇଁ ସମାଜ ଗୋଟିଏ ସାଧନ ହେଲେ ସମାଜ ତ ରହିବ ନାହିଁ, ବ୍ୟକ୍ତିର ଅସ୍ତିତ୍ୱ ମଧ୍ୟ ଅସମ୍ଭବ । ମୋ ପିଲାଦିନେ ଜନ ଷ୍ଟ୍ରେଚିଙ୍କର ଗୋଟିଏ ବହି ପଢ଼ିଥିଲି । ସେଥିରେ ସେ ଗୋଟିଏ ଗପ ଲେଖିଥିଲେ । ଜଣେ ଲୋକ ଏପରି ଏକ ଯନ୍ତ୍ରର ଉଦ୍ଭାବନ କରିଛନ୍ତି ଯେ ଗୋଟିଏ ବୋତାମ ଟିପିଲେ ତହିଁରୁ ତେଲ ବାହାରୁଛି । ପୃଥିବୀର ବିଭିନ୍ନ ରାଜ୍ୟର ଲୋକେ ଏ ଯନ୍ତ୍ର ଦେଖିବାକୁ ଆସିଛନ୍ତି । ଜଣେ ପଚାରିଲେ, 'ଏଥିରୁ ତୁ କଣ ପାଉ ?' ଉତ୍ତର ହେଲା, 'ତେଲ' । ପୁଣି ପ୍ରଶ୍ନ, 'ମୁଁ ସେକଥା ଜାଣିଚି । ତୁ ଏଥିରୁ କଣ ପାଉ ?' ଉତ୍ତର, 'ମୁଁ ତୁ ରେ ଫରକ ନାହିଁ । ସିଏ ଚିପିଲେ ସେଇ ତେଲ ।' ପ୍ରଶ୍ନକର୍ତ୍ତା ବ୍ୟକ୍ତିଗତ ଲାଭ ବିଷୟରେ ଚିନ୍ତିତ । ଉଦ୍ଭାବନ ପାଗଳ ଲୋକ ତା' ଉଦ୍ଭାବନ ପରିଣାମ ଚିନ୍ତାରେ ବ୍ୟସ୍ତ । ଏଥିରୁ ସମାଜ ସଚେତନତାର ଦୁଇ ବିଭିନ୍ନ ଦୃଷ୍ଟି ସ୍ପଷ୍ଟ ହେବ ।

ମୋ ବୋଉ ପିଲାଦିନେ ମୋତେ ବହୁତ କଥା ଶୁଣେଇଥିଲା । ତହିଁରୁ ଯୋଡ଼ିଏ ମୁଁ କର୍ଣ୍ଣାଟକର ବିଖ୍ୟାତ ଉପନ୍ୟାସକାର ଅନନ୍ତମୂର୍ତ୍ତିଙ୍କୁ କହିଥିଲି । ସେ ତାଙ୍କ 'ଭାରତୀପୁରା' ଉପନ୍ୟାସରେ ଏହା ବ୍ୟବହାର କରିଛନ୍ତି ବୋଲି କହିଥିଲେ । ବିଖ୍ୟାତ ପଣ୍ଡିତ ଏ. କେ. ରାମାନୁଜନଙ୍କୁ ବହୁବର୍ଷ ତଳେ ଏକଥା ଦୁଇଟି କହିଥିଲି । ସେ ଏ ବର୍ଷ ବାହାରୁଥିବା ତାଙ୍କର ଲୋକକଥା ବହିରେ ଏ ଦୁଇଟିର ଅନୁବାଦ ଦେଇଛନ୍ତି ବୋଲି କହିଥିଲେ । ସେଥିରୁ ଗୋଟିଏ

କଥା ଏହିପରି - ଗୋଟିଏ ବ୍ରାହ୍ମଣ ଶାସନରେ କେତେଘର ଆଚାରବନ୍ତ ବ୍ରାହ୍ମଣଙ୍କ ବାସ । ଘରେ ଘରେ ହୋମକୁଣ୍ଡ । ସକାଳ ସଞ୍ଜେ ଓଁକାର ଧ୍ୱନିରେ ଗାଁଟିରେ ଗୋଟିଏ ପବିତ୍ର ବାତାବରଣ । ଦିନେ ସକାଳେ ଗୋଟିଏ ପରିବାରରେ ବୁଢ଼ାବ୍ରାହ୍ମଣ ହୋମକୁଣ୍ଡ ସଫା କଲାବେଳକୁ ଦେଖିଲା ଯେ ହୋମକୁଣ୍ଡରେ ମୁଣ୍ଡାଏ ସୁନା । ଘରର ସମସ୍ତଙ୍କୁ ସେ ଏକାଠି କଲା । ପଚାରିଲା—କହ, କିଏ କଣ ଅନ୍ୟାୟ କରିଛ ?' କିଏ କଣ ଅନ୍ୟାୟ କରିଛି ସେଇକଥା ଭାବି ସଭିଏଁ ବ୍ୟସ୍ତ । ନୂଆ ହୋଇ ଘରକୁ ଆସିଥିବା ସବାସାନବୋହୂ ଥରି ଥରି କହିଲା—'ମତେ ଡର ଲାଗିବାରୁ ମୁଁ ବାହାରକୁ ନ ଯାଇ ହୋମକୁଣ୍ଡରେ ପରିସ୍ରା କରି ଦେଇଛି ।' ବୁଢ଼ା ଏ କଥା ଶୁଣି ରାଗରେ ଅଗ୍ନିଶର୍ମା । କ'ଣ ପ୍ରାୟଶ୍ଚିତ୍ତ କରାଯିବ ଏଇକଥା ଭାବୁ ଭାବୁ ତାକୁ ଲୋଭ ଗ୍ରାସିଲା । ସେ କହିଲା ଏଇଥିଯୋଗୁ ହୋଇଛି କି ନାହିଁ ଦେଖିବାକୁ ତୁ ଆଜି ରାତିରେ ପରିସ୍ରା କର । ବୋହୂ ପରିସ୍ରା କଲା । ତା ଆରଦିନ ସୁନା ମୁଣ୍ଡାଏ ମିଳିଲା । ଇଏ ଚାଲିଲା । ସିଏତ ଛପିବା କଥା ନୁହେଁ । କାନକୁ ପାଞ୍ଚକାନ ହେଲା । ସମସ୍ତଙ୍କର ସୁନାମୁଣ୍ଡା ଉପୁଜେଇବା କାମ ଆରମ୍ଭ ହୋଇଗଲା । ଦରିଦ୍ର ଶାସନ ସମ୍ପନ୍ନ ଗାଁଟି ବଦଳିଗଲା । ହେଲେ ସେଇ ଗାଁରେ ବୁଢ଼ା ବ୍ରାହ୍ମଣଟିଏ ଆଉ ବୁଢ଼ୀ ବ୍ରାହ୍ମଣୀଟିଏ ମିଶି ଗୋଟିଏ ପରିବାର । ଦି'ଓଳି ଦି'ମୁଠା ଖାଇବାକୁ ମିଳେ ନାଇଁ । ମାଗିଲେ ଦଉଛି ବା କିଏ ? ବୁଢ଼ୀ ଯେତେ ନେହୁରା ହୋଇ ହୋମକୁଣ୍ଡରେ ମୂତିବାକୁ ଅନୁନୟ ମାଗିଲେ ବି ବୁଢାର ଏକା ନାହିଁ । ଦିନେ ଭୋକରେ ଡହଳବିକଳ ହୋଇ ବୁଢ଼ୀ ବୁଢ଼ାକୁ ପରସ୍ତେ ଶୋଧିଲା । ବୁଢ଼ା ସହି ନ ପାରି କହିଲା 'ଆଲୋ ତୁ ବୁଝୁନୁ କାହିଁକି ? ମୋ ପୁଣ୍ୟରୁ ଗାଁଟା ରହିଛି ।' ବୁଢ଼ୀ ତ ଶୁଣିଥିଲା । ଗରମ କଡ଼େଇରେ ପାଣି ପଡ଼ିଲା ପରି ଫାଁକରି କହିଲା—'ଏତେ ଅହଂକାର । ଦି'ମୁଠା ଖାଇବାକୁ ଦେବାର ସାମର୍ଥ୍ୟ ନାହିଁ, ତହିଁରେ ପୁଣି ଏତେ ଅହଂକାର ?' ବୁଢ଼ା ଆଉ କଣ କରିବ ? କହିଲା, 'ତୁ ବୁଝିବୁ ନାଇଁ । ଚାଲ, ଆମେ ଏ ଗାଁ ଛାଡ଼ି ଚାଲିଯିବା ।' ସେମାନେ ଗାଁ ଛାଡ଼ି ବାହାରିଗଲେ । ଏଣେ କଣ ହୋଇଛି ନା ଗାଁରେ ଯିଏ ବଢ଼ୁଆ ଥିଲେ ସେମାନେ ପାଖ ପଡ଼ୋଶୀର ହୋମକୁଣ୍ଡକୁ ମାଡ଼ି ବସିଲେ । ଦୁର୍ବଳ ଲୋକେ ଆପଣାକୁ ରକ୍ଷା କରିନପାରି ସୁବିଧା ଦେଖି ଗାଁରେ ନିଆଁ ଲଗେଇଦେଲେ । ଗାଁ ପୋଡ଼ି ପାଉଁଶ ହୋଇଗଲା । ସବୁ ଲୋଭୀ ବ୍ରାହ୍ମଣ ସେଇ ନିଆଁରେ ପୋଡ଼ି

ହୋଇ ମଲେ । ବ୍ରାହ୍ମଣମାନେ ଘରପୋଡ଼ି ନାଆଁରେ ପୋଡ଼ି ମରନ୍ତୁ କି ଆପଣା ଲୋଭର ନାଆଁରେ ପୋଡ଼ି ମରନ୍ତୁ ସିଏ ଅଲଗା କଥା । କିନ୍ତୁ ଯେଉଁ ବ୍ରାହ୍ମଣ ନ ଖାଇ ନ ପିଇ ସମାଜ ଧର୍ମର ରକ୍ଷା ପାଇଁ କଷ୍ଟ କରୁଥିଲା ସିଏ ସମାଜ ସଚେତନ ନା ଯିଏ ସୁନାମୁଣ୍ଡା ଉପୁଜେଇ ସଂପନ୍ନ ଜୀବନର ସ୍ୱପ୍ନ ଦେଖୁଥିଲେ ସିଏ ସମାଜ ସଚେତନ ? ଜୀବନସାରା ମୁଁ ଏଇ ପ୍ରଶ୍ନର ଉତ୍ତର ଖୋଜୁଚି । ଆଜି ଏଇ ପ୍ରଶ୍ନର ଉତ୍ତର ପାଇଁ ମୁଁ ଆପଣଙ୍କ ଦୁଆରକୁ ଆସିଚି ।



# ଦେଶ ଭାବନା

ଦେଶ ଦେଶ ଭିତରେ ଆର୍ଥିକ ସମ୍ବନ୍ଧ ତିନୋଟି କଥା ଉପରେ ନିର୍ଭର କରେ—ଜିନିଷପତ୍ରର ଆମଦାନି ରପ୍ତାନି, ପୁଞ୍ଜିର ପ୍ରବାହ ଆଉ ଟଙ୍କାର ବଦଳ । ଟଙ୍କାର ଆମଦାନି ରପ୍ତାନି ଦ୍ୱିତୀୟ ମହାଯୁଦ୍ଧ ପରେ ଅଧିକ ପ୍ରାଧାନ୍ୟ ଲାଭ କରିଛି । ମାର୍କସ୍ ପୁଞ୍ଜିବାଦର ପ୍ରତିଯୋଗିତା ଦିଗ ଉପରେ ଅଧିକ ଜୋର ଦେଇଥିଲେ । ଲେନିନ୍ ପୁଞ୍ଜିର ପ୍ରବାହ ଉପରେ ଅଧିକ ଜୋର ଦେଇଥିଲେ । ଲେନିନ୍‌ଙ୍କ ଭାଷାରେ କହିଲେ ପୁରୁଣା ପୁଞ୍ଜିବାଦରେ ଯେଉଁଠି ପ୍ରତିଯୋଗିତା ଉପରେ ଜୋର ଥିଲା ସେଠି ଜିନିଷର ରପ୍ତାନି ଆଉ ପୁଞ୍ଜିବାଦର ପର ଅବସ୍ଥାରେ ଯେତେବେଳେ ଏକଚାଟିଆ କାରବାର ଉପରେ ଅଧିକ ଜୋର ଦିଆଗଲା ସେତେବେଳେ ପୁଞ୍ଜିର ରପ୍ତାନି ପ୍ରାଧାନ୍ୟ ପାଇଲା । ଲେନିନଙ୍କ ବିଚାରରେ ପୁଞ୍ଜିର ପ୍ରବାହ ପୁଣି ଆମଦାନି କରୁଥିବା ଦେଶ-ମାନଙ୍କର ବିକାଶର ଧାରାକୁ ବ୍ୟାହତ କରୁଥିଲେ ସୁଦ୍ଧା ପୃଥିବୀର ସବୁଆଡ଼େ ପୁଞ୍ଜିବାଦର ଚେର ଟାଣ କରିବ ।

ଇତିହାସର ଗତି ବିଚିତ୍ର । ଇତିହାସ ଲେନିନ୍‌ଙ୍କ କଥାମତେ ଗଲେ ନାହିଁ । ବିଦେଶୀ ପୁଞ୍ଜି ଯେଉଁ ଦେଶକୁ ଗଲା ତା ପ୍ରତିବଦଳରେ ପୁଞ୍ଜି ଖଟାଇଥିବା ଦେଶମାନେ ଅଧିକ ମୁନାଫା ପାଇଲେ । ୧୮୭୦ରୁ ୧୯୧୩ ଭିତରେ ଇଂଲଣ୍ଡ ପୁଞ୍ଜି ଖଟେଇ ଥିଲା ୨.୪ ବିଲିୟନ ପାଉଣ୍ଡ; କିନ୍ତୁ ତହିଁରୁ ଆୟ ୪.୧ ବିଲିୟନ ପାଉଣ୍ଡ । ୧୯୫୦ରୁ ୧୯୬୩ ଭିତରେ ଆମେରିକାର ପୁଞ୍ଜି ରପ୍ତାନି ୧୭.୪ ବିଲିୟନ ଡଲାର; କିନ୍ତୁ ତହିଁରୁ ଆୟ ୨୯.୪ ବିଲିୟନ ଡଲାର । ଉଭୟ କ୍ଷେତ୍ରରେ ଶତକଡ଼ା ୭୦ ଲାଭ ।

ଆଜିକାଲି ବହୁରାଷ୍ଟ୍ରୀୟ କମ୍ପାନୀ ଯୁଗରେ ଦେଶର ବଳକା ପୁଞ୍ଜି ବିଦେଶରେ ଖଟା ହେବା ପାଇଁ ଉଦ୍‌ଗ୍ରୀବ ନୁହେ । ଟଙ୍କାର ବଦଳକୁ ପୁଞ୍ଜି ରୂପେ ବିଚାରକରି ଆଉଥରେ ଦେଶରୁ ପୁଞ୍ଜି ଉଠାଇ ତହିଁରୁ ଲାଭ କରିବା ବର୍ତ୍ତମାନ ବହୁରାଷ୍ଟ୍ରୀୟ ଏକଚାଟିଆ ପୁଞ୍ଜିବାଦର ଆଦର୍ଶ । ଏଥିରେ ପୁଞ୍ଜି

ଆମଦାନି କରୁଥିବା କମ୍ପା ବହୁରାଷ୍ଟ୍ରୀୟ କମ୍ପାନୀକୁ ନିମନ୍ତ୍ରଣ କରୁଥିବା ଦେଶର ଆନ୍ତରିକ ଶକ୍ତିର ଅପଚୟ ।

ଯେଉଁ ଦେଶର ରପ୍ତାନି ଆମଦାନି ତୁଳନାରେ କମ୍ ସେ ଦେଶ ଦୁର୍ଭାଗା ଦେଶ । ସେ ଦେଶ କ୍ରମେ ବିଦେଶୀ ଶକ୍ତିଙ୍କ ପାଖରେ ଧାରୁଆ ହୁଏ, ବିକାପଡ଼େ, ଆଉ ଶେଷରେ ଆପଣା ସ୍ୱାଧୀନତା ହରାଏ । ଏଇ ଦୃଷ୍ଟିରୁ ଭାରତକୁ ଦେଖିଲେ ସ୍ପଷ୍ଟ ହେବ ଯେ ଗତ ୧୫ ବର୍ଷ ଭିତରେ ବଡ଼ଲୋକଙ୍କ ଉପଭୋଗ ସାମଗ୍ରୀ ଆମଦାନି କରି ଦେଶ ଏପରି ଏକ ସ୍ଥିତିରେ ପହଞ୍ଚିଛି ଯେ ଋଣ କରିବା ଛଡ଼ା ଗତ୍ୟନ୍ତର ନାହିଁ । ସେଇ ଋଣର ସୁଧ ଦେବାକୁ ପୁଣି ଅଧିକ ଋଣର ଆବଶ୍ୟକ ହେଉଛି ।

ଦେଶ ଆପଣାର ଉପଜକୁ ରପ୍ତାନି କରେ । ଆମ ଦେଶରେ କୃଷି ଏକ ପ୍ରଧାନ ଧନ୍ଦା । ଏଥିରେ କେବଳ ଅଧିକ ଶ୍ରମଶକ୍ତିର ଉପଯୋଗ ନୁହେଁ, ଦେଶର ମୌଳିକ ଆବଶ୍ୟକତା ଖାଦ୍ୟରେ ସ୍ୱାବଲମ୍ବନ ଏହା ଉପରେ ନିର୍ଭର କରେ । ତେଣୁ ଏକ ସୁସ୍ଥ କୃଷିନୀତି ଦେଶ ପକ୍ଷରେ ଏକାନ୍ତ ପ୍ରୟୋଜନ । ଆମ ଦେଶରେ ଏ ପର୍ଯ୍ୟନ୍ତ ଚାଷୀ ହାତକୁ ଜମି ଦେବାର ବ୍ୟବସ୍ଥା ହୋଇ ପାରିଲା ନାହିଁ । ବିଭିନ୍ନ ପ୍ରଦେଶରେ ଜମିର ପୁନର୍ବଣ୍ଟନ ପାଇଁ ଯେଉଁ ଆଇନ ହୋଇଛି ସେଥିରେ ଏତେ କଣା ଯେ ମଝିଲୋକେ ସବୁ ବ୍ୟବସ୍ଥାକୁ ଭଣ୍ଡୁର କରି ଦେଉଛନ୍ତି । ବଡ଼ ଚାଷୀଙ୍କ ଉପରେ କୃଷି ଆୟକର ନାହିଁ । ଫଳରେ ଏକ ଗ୍ରାମୀଣ ଉଚ୍ଚମଧ୍ୟବିତ୍ତ ଶ୍ରେଣୀର ସୃଷ୍ଟି ହେଉଛି, ଯେଉଁମାନେ ସ୍ଥିତି-ସ୍ଥାପକତାର ପୋଷକ । କୃଷି ପାଇଁ ଜଳସେଚନର ବ୍ୟବସ୍ଥା ନାହିଁ । ଜଳସେଚନ ବିସ୍ତାର ଗତି ଏତେ ଧିମେଇଛି ଯେ ତାହା ଥାଇ ନଥିଲା ପରି । ଆଗ କାଳରେ କୂଅ ପୋଖରୀ ଖୋଳା ଯାଉଥିଲା । ଆଜି ବଡ଼ ବଡ଼ ନଈ ବନ୍ଧ ଯୋଜନା ହେଲାବେଳେ ପୁରୁଣା ପୋଖରୀର ସଂସ୍କାର ସୁଦ୍ଧା ହେଉ ନାହିଁ । ନୂଆ ପୋଖରୀ ତ ଦୂରର କଥା ।

ଆମ ଦେଶରେ ପୁରୁଷ ପୁରୁଷ ଧରି ବିଭିନ୍ନ ପ୍ରକାର ଧାନ, ରବି ଫସଲ ହେଉଥିଲା । ଏହା ଫସଲ ରୋଗ ବିରୋଧରେ ପ୍ରଧାନ ଔଷଧ ଥିଲା । ବର୍ତ୍ତମାନ ଅଧିକ ଚାଷ ନାଁରେ ବିଭିନ୍ନତାକୁ ଲୋପ କରି ଏକଫସଲ ଚାଷ କରି ଏକ ପ୍ରକାର ଧାନ, ଏକ ପ୍ରକାର ଗହମ ଚାଷ କରିବାରୁ ବିଭିନ୍ନ ପ୍ରକାର

ବନ୍ଧନ ଛୁଡ଼ିଗଲାଣି । ପୁଣି ଏଥିପାଇଁ ସାର ଦେବାକୁ ଯେଉଁ କାରଖାନା କରାଗଲା ତାର କୁପରିଣାମ ଆମେ ଭୋଗୁଛୁ । ଜମିର ବଳ ଭାଙ୍ଗିଯିବା ନୁହେଁ, ପରିବେଶକୁ ନଷ୍ଟ କରିବାରେ ଏଇ ସାର - କାରଖାନାମାନଙ୍କର ଦାନ କିଛି କମ୍ ନୁହେଁ । ଶକ୍ତିର ଉପଯୋଗିତା ଦୃଷ୍ଟିରୁ ବିଗୁରିଲେ କ୍ଷତିର ହିସାବ ନାହିଁ । ଆର୍ଥିକ ସାହାଯ୍ୟ ଦେଇ କୃଷିଜାତ ଦ୍ରବ୍ୟର ଉତ୍ପାଦନ ନିୟନ୍ତ୍ରଣ ଶାସନ ହାତରେ ଏକ ପ୍ରଧାନ ଅସ୍ତ୍ର । ପ୍ରଥମତଃ ଆର୍ଥିକ ସାହାଯ୍ୟ ଭୁଲ୍ ଜାଗାରେ ଦିଆଯାଉଥିଲା । ଯାହା ବା ଥିଲା ତାହା ବର୍ତ୍ତମାନ ଅର୍ଥନୀତିରେ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା । ଏହି କୃଷିନୀତି ଫଳରେ ଆମକୁ ବିଭିନ୍ନ ସମୟରେ ଖାଦ୍ୟ ଆମଦାନି କରିବାକୁ ପଡ଼ୁଛି । ରପ୍ତାନି ଦୂରର କଥା । ବିଶେଷ ପ୍ରଶ୍ନ ହେଉଛି ଲୁଗା । ଗାନ୍ଧି ଯେ କାହିଁକି ଆଣ୍ଠୁ ଲୁଚ୍ଚ ଲୁଗା ପିନ୍ଧୁଥିଲେ ତା ଆମେ ଭୁଲି-ଗଲୁଣି । ଆମ ବସ୍ତ୍ରନୀତିର ସ୍ୱାଭାବିକ ପରିଣତି ଯେ ଆନ୍ଧ୍ରପ୍ରଦେଶରେ ପ୍ରତିଦିନ ଗୋଟିଏ ତନ୍ତୀର ମୃତ୍ୟୁ, ଏ କଥା ବଢ଼େଇ କହିବାର ପ୍ରୟୋଜନ ନାହିଁ । ଭାରତର ପ୍ରତି ପ୍ରଦେଶରେ ସୁନ୍ଦର ହାତବୁଣା କାମ ଥିଲା । ଓଡ଼ିଶା ତନ୍ତୀ ତାଙ୍କ ସାତପୁରୁଷୀ ବୟନ ଶିଳ୍ପ ଆନ୍ଧ୍ର ତନ୍ତୀଙ୍କି ବିକଲେ । ଆସାମର ଓ ପୂର୍ବାଞ୍ଚଳର ହାତତନ୍ତ କଦର ଅଭାବରୁ ମରିବାକୁ ବସିଲାଣି । ତେଣୁ ଆମ ସ୍ୱାତନ୍ତ୍ର୍ୟ ବଜାୟ ରଖିଥିବା ଜିନିଷର ରପ୍ତାନି ଯେ କ୍ରମେ ଘାଟିତି ଆଡ଼କୁ ଯାଉଛି, ଏହା ତାହାର ଏକ ଉଦାହରଣ ।

ପୁଞ୍ଜିର ପ୍ରବାହ ? କୋକାକୋଲା କମ୍ପାନୀକୁ ଦେଶରୁ ବାହାର କରାଗଲା ବେଳେ ସେମାନେ ଯେ କେତେ ଲାଭାଂଶ ଦେଶ ବାହାରକୁ ନେଇଛନ୍ତି, ତାହା ସେମାନେ ଆଣିଥିବା ମୂଳଧନ ତୁଳନାରେ କେତେ ବେଶି, ଏ ବିଷୟରେ ବହୁ ଆଲୋଚନା ହୋଇଯାଇଛି । ଆମେ ଆଜି ପୁଣି ସେଇ କୋକାକୋଲା କମ୍ପାନୀକୁ ନିମନ୍ତ୍ରଣ କରି ଆଣିଛୁ । ବିଦେଶୀ କମ୍ପାନୀ ଦେଶୀ କମ୍ପାନୀର ସାମର୍ଥ୍ୟ ଚୋରି କରି ଦେଶରୁ ମୂଳଧନ ଉଠାଇ ଲାଭାଂଶ ବାହାରକୁ ନେବାର ଯେଉଁ ଫନ୍ଦି କରିଛନ୍ତି ତା ଫଳରେ ଦେଶ ଧ୍ୱଂସ ଆଡ଼କୁ ଯାଉଛି । ନୂଆ ଓ ଆଧୁନିକ ଟେକ୍ନିକ ତ ଦେଶକୁ ଆସିବ ନାହିଁ । ଦେଶକୁ ଶିଳ୍ପ କ୍ଷେତ୍ରରେ ପଛୁଆ ରଖି ଆପଣାର ଲାଭ ପରିମାଣ ବଢ଼ାଇବା ପୁଞ୍ଜିବାଦର ଲକ୍ଷ୍ୟ । ନୂଆ ଗବେଷଣା କ୍ଷେତ୍ରରେ ମଧ୍ୟ ଏମାନେ ପ୍ରଧାନ ବାଧା ହୋଇ ଠିଆହେବେ । ଅନ୍ତିମରେ

ଗବେଷଣା କ୍ଷେତ୍ରରେ ସହଯୋଗ ବନ୍ଦ କରିବା ପାଇଁ ରୁଷକୁ ଆମେରିକା ପ୍ରସ୍ତାବିତ କରିବାର ଚେଷ୍ଟା ଏହାର ଏକ ଉଦାହରଣ ।

ଏପରି ଅବସ୍ଥାରେ ଜନମତକୁ ଶିକ୍ଷିତ କରିବାର ଦାୟିତ୍ୱ ଆଜି ପ୍ରଧାନ ସମସ୍ୟା ହୋଇପଡ଼ିଛି । ପୃଥିବୀର ରାଜନୈତିକ ବାସ୍ତବତା ଓ ଜୈବିକ-ଭୌତିକ ବାସ୍ତବତା ମଧ୍ୟରେ ସଂଘର୍ଷ ବିଷୟରେ ୟୁରୋପରେ ଯେପରି ସଚେତନତା ଦେଖାଯାଉଛି ଭାରତରେ ତାହାର କାଣିଚାଏ ମଧ୍ୟ ନାହିଁ । ଆମ ଦେଶର ସମାଜ-ବିଜ୍ଞାନୀମାନେ ତତ୍ତ୍ୱ ପଛରେ ଗୋଡ଼ାଇ ଭୂଆଁ ବୁଲିଲା ବେଳେ ଦେଶର ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ବାସ୍ତବତା ଭୁଲିଗଲେଣି । ଯେତେ ଶୀଘ୍ର ସେମାନଙ୍କର ଆଖି ଫିଟେ ଦେଶ ପାଇଁ ସେତିକି ମଙ୍ଗଳ ।



# ସାହିତ୍ୟ ସଭା

ଆଜିକାଲି ଆମର ସାହିତ୍ୟ ନୁହେଁ, ସାହିତ୍ୟ ସଭା ଲୋଡ଼ା । ଆଜିକାଲି ଆମେ ସ୍ଥାନୀୟ ସାହିତ୍ୟରେ ସନ୍ତୁଷ୍ଟ ନୋହୁ । ଆମର ବିଶ୍ୱସାହିତ୍ୟ ଲୋଡ଼ା । ରବୀନ୍ଦ୍ରନାଥଙ୍କ କଥାରେ କହିଲେ, "ତୋର ଯେ ଯା ବଳସ ଭାଇ । ଆମାର ସୋନାର ହରିଣ ଚାଇ ।" ଭାଷା ଆଉ ସାହିତ୍ୟ ଯୁଆଡ଼େ ଗଲେ ଗଲା । ଯିବା । ଅନ୍ତତଃ କିଛି ସୁନା ଆଉ ହରିଣ ମାଉଁସ ମିଳିଗଲେ ସଭାକୁ ଆସିବା ଫଳ ମିଳିଗଲା ବୋଲି ଜାଣି ।

ମୋର ସୁନା ପ୍ରତି ଆଉ ହରିଣ ମାଉଁସ ପ୍ରତି ବିରାଗ ଯୋଗୁଁ ହୁଏତ ମୁଁ ଏଯାବତ୍ ସଭାକୁ ଯାଇନି । କିନ୍ତୁ ଆପଣ ମାଉଁସେ ହରିଣୀ ବଇରୀ । ଏ ସଭା-ମାନଙ୍କୁ ପରସ୍ପର ପ୍ରତି ବୈରିଭାବଥିବା ଏତେ ଲୋକ ଆସନ୍ତି ଯେ ପ୍ରତ୍ୟେକ ପ୍ରତ୍ୟେକଙ୍କ ମାଉଁସ ଯୁଝି ଖାଇବାକୁ ତିଆର । ହରିଣ ଅଭାବରେ ଏଇଟା ମନ୍ଦ କଥା ନୁହେଁ । ବିଶ୍ୱ ତାମିଲ ସଭାରେ ଯିଏ ନ ପଢ଼ିବା କଥା ସିଏ ପ୍ରବନ୍ଧ ପଢ଼ିଲେ । ସିଏ ପଢ଼ିବାକୁ ସାତ ସମୁଦ୍ର ତେର ନଈ ପାରି ହୋଇ ଆସିଥିଲେ, ତାଙ୍କ ପାଇଁ ଶ୍ରୋତା ବକ୍ତା କେହି ନାହିଁ । ଯିଏ ପ୍ରଶସ୍ତି ଗାଇଲେ ତାଙ୍କ ପାଇଁ ଆଗରେ ଜାଗା । ପଇସା ଖର୍ଚ୍ଚ କରି କେମିତି ଗାଳି ଆଉ ବଦନାମ କିଣାଯାଏ ତାର ଭଲ ଉଦାହରଣ ହେଲା ଏଇ ସଭା ।

ତାମିଲ ସଭାକୁ ତାଳ ଦେଇ ହେଲା ବିଶ୍ୱ ତେଲୁଗୁ ସଭା । ଏଇଟି ଦେଶ ବାହାରେ କରିବା ଠିକ୍ ହେଲା । ଆପଣ ଯାହା କୁହନ୍ତୁ ପଛକେ ଦେଶ ଭିତରେ ହେଲେ ତାକୁ ଠିକ୍ ଆନ୍ତର୍ଜାତିକ କୁହାଯାଇ ପାରିବ ନାହିଁ । ବିଦେଶୀ ଯୋଗ ଦେଲେ ବି । ଦେଶୀ ଲୋକ ବିଦେଶ ଯାଇ ସଭା କଲେ ଯାଇ ଆନ୍ତର୍ଜାତିକ ସଭା ହେବ । ଏଇ ସଭାକୁ ଯେତେ ଲୋକ ବାହାରିଲେ, ସେଥିରୁ କେତେକ ମାନ୍ଦ୍ରାଜ ଉଡ଼ାଜାହାଜ ଘାଟିରେ ରହିଗଲେ । ଯିଏ ଗଲେ, ଜାଗା ଅଭାବରୁ ଅନେକେ ସେ ପାରି ଉଡ଼ାଜାହାଜ ଘାଟିରେ ରହିଲେ, ଯିଏ ଜାଗା ମୁଣ୍ଡରେ ପହଞ୍ଚିଲେ ତାଙ୍କ ଭିତରୁ ଅଧା ଖାଇବାକୁ ପାଇଲେ ନାହିଁ । ଏମିତି କୁଆଡ଼େ ନାଚଗୀତର

ଧୁମ୍‌ଧାମରେ ମହାସମାରୋହରେ ସେ ସଭା ସରିଲା । ଅବଶ୍ୟ ଜୋଉ ନାଟୁଣୀଙ୍କି କିଏ କାହିଁକି ବାଛୁଥିଲେ ସେ ବିଷୟରେ ପରେ ଟିକୀକ ଖବର ଗୃଳିଲା ।

କନ୍ନଡ଼ ବା ପଞ୍ଚରେ ପଡ଼ିବ କାହିଁକି ? ବିଶ୍ୱ ସମ୍ମିଳନୀ କୁ ହଜାରେ ଜାଗାରେ ଗୃରିହଜାର ଆସିଲେ । ଫଳରେ କେତେ ନିମନ୍ତ୍ରିତ ଅତିଥି ସଭା ଜାଗାରେ ବି ପଶିଣି ପାରିଲେନି । କେହି କେହି ଯହି ବା ଗୃରି ଧକ୍କା ଖାଇଲେ ସେଇଟା ତାଙ୍କ ସାହିତ୍ୟ-ପ୍ରୀତି ବୋଲି ଜାଣ । ମୁଁ ଜଣଙ୍କୁ ପଗୃରିଲି, ଏଇ ବିଶ୍ୱସଭା ପାଇଁ କେତେ କନ୍ନଡ଼ ବହି ବିଶ୍ୱଭାଷାରେ ଅନୂଦିତ ହେଲି ? ଉତ୍ତର—ଗୋଟିଏ ବି ନୁହେଁ । ପ୍ରଶ୍ନ—କେତେ ବିଶ୍ୱଭାଷାର ବହି କନ୍ନଡ଼ ଭାଷାରେ ଅନୁବାଦ କରାହେଲି ? ଉତ୍ତର—ଗୋଟିଏ ବି ନୁହେଁ । ଖାଲି ତରବରରେ ଯେଉଁ ସମ୍ମିଳନୀ ଘରର କାମ ଶେଷ ହୋଇଥିଲି ତାର ପାହାଚ, ତଳ କାମ ଭାଙ୍ଗିଲା ।

ଏ ସବୁ ସମ୍ମିଳନୀର ଗୋଟିଏ ସାଧାରଣ କଥା ହେଲା, କିଏ ଏଥିରୁ କେତେ ପଇସା ଖାଇଲେ—ଏଇ ବିଷୟରେ ବହୁଦିନଯାଏ ଖବର-କାଗଜରେ ଚର୍ଚ୍ଚା । କାହା ବକ୍ତୃତା କେତେ ଖରାପ, କିଏ କେତେ ଖରାପ ଲେଖକ, କିଏ କାହାକୁ କେମିତି ଅପମାନ ଦେଲା ଆଉ କିଏ କାହା ପାଖରେ କୁଆଡ଼େ ଗଲା ଏକଥା ଜାଣିବାକୁ ମନ କଲେ ଏଇସବୁ ସଭାକୁ ଯିବା କଥା । ମୁଁ ଉପରର କୌଣସି ସଭାକୁ ନ ଯାଇ ମଧ୍ୟ ଏସବୁ ବାବଦରେ ବହୁତ ଶୁଣିଛି ।

ଗୋଟିଏ ସାହିତ୍ୟ ସଭାକୁ ରାଜନୈତିକ ନେତାମାନଙ୍କୁ ଡକାଯାଇଥିଲା । ବିରୋଧୀ ଦଳର ଜଣେ ପ୍ରଥମେ ଭାଷଣ ଆରମ୍ଭ କରି କହିଲେ କଂଗ୍ରେସ ଲୋକେ କି ସାହିତ୍ୟ କରିବେ କିଓ ? ଗାନ୍ଧୀଙ୍କ ପରି ମେଞ୍ଚଡ଼ା ଟୋକା ପଣ୍ଡିତ୍ ନୀତିଜ୍ଞାନ, କଳକବ୍‌ଜା ବିଷୟରେ ସିନା କହିବେ, ସାହିତ୍ୟ ବିଷୟରେ ସିଏ କଣ ଜାଣନ୍ତି । ସଭାରୁ ପ୍ରତିବାଦ ହେଲା । ଏଇଟା ସାହିତ୍ୟ ସଭା, ରାଜନୀତିକ ନୁହେଁ । ଆପଣ ସାହିତ୍ୟ ବିଷୟରେ ଯାହା ଜାଣନ୍ତି କହନ୍ତୁ । ବକ୍ତା ରାଗିଗଲେ । କଣ ମତେ ପରୀକ୍ଷା କରୁଛ ? ମତେ ଅପମାନ ଦେବାକୁ ଡାକିଛ ? ରାଜନୀତି ଛଡ଼ା ସାହିତ୍ୟ କାହିଁ ? ଆମ ଯୁବଅନ ଲୋକେ ଧୋକାବାଜ ଶାସନ ବିରୁଦ୍ଧରେ

ଯେଉଁ ସ୍ଲୋଗାନ ଦଅନ୍ତି ତାହାହିଁ ସଙ୍ଗୀତ । ଖଟିଖିଆଙ୍କ ପାଇଁ ମୋର ଏଇ ଭାଷଣ ତ ସାହିତ୍ୟ । ହୋ-ହା ହେଲା । ଟେକା ପଥର ପଡ଼ିଲା । ନେତା ଖସି ଚାଲିଗଲେ । ଖଣ୍ଡିଆଖାବରା ହେଲେ ଖଟିଖିଆ ଆଉ ବିଚାରା ସାହିତ୍ୟ-ପ୍ରେମୀ ।

ଆଉ ଗୋଟିଏ ସଭା । ରାଜ୍ୟର ମୁଖ୍ୟମନ୍ତ୍ରୀ ଆସିଛନ୍ତି । ଚାରିଆଡ଼େ ପୁଲିସ ପହରା । ପୁଲିସ ପୋଷାକ ପିନ୍ଧି ଯେତେ, ସାଦା ପୋଷାକରେ ସେତେ । ଭିତରକୁ ଯିବାକୁ ବାଟ ଖୋଜୁଚି । ଏଣେ ସେପଟୁ ବାହାର ଆଡ଼କୁ ପେଲା । ମୁଁ ପଚାରିଲି କଓ ସାହିତ୍ୟପ୍ରେମୀ ଭାଇ, ଏମିତି ପେଲୁଚ କାହିଁକି ? ଭଦ୍ରଲୋକ ମୁରୁକି ହସି କହିଲେ, ଆଜ୍ଞା ଅନେକ ଅନେକ ଭାଷାରେ ଗାଳି ଦେଇଛନ୍ତି । ହେଲେ ଆଜଯାଏ କେହି ସାହିତ୍ୟପ୍ରେମୀ କହି ଗାଳି ଦେଇ ନଥିଲେ । ମୁଁ ମୋ ଉଜଟି କରୁଚି । ଭିତରକୁ ଯିବାକୁ ମନା । ଭାଗ୍ୟକୁ ଜଣେ ଚହ୍ନିଲେ । ସେଇବାଟ ଦେଇ ଯେତେବେଳେ ପେଣ୍ଡାଲ ଆଡ଼କୁ ଯାଏ, ପଛରୁ ଭଦ୍ରଲୋକ କହିଲେ, ଆଜ୍ଞା କିଛି ମନେ କରିବେ ନାହିଁ । ମୁଁ ମୋ ଡିଉଟି କରୁଚି ।

ଖାଇଲା ବେଳକୁ ଆହୁରି ପେଲାପେଲି । ଶୁଣିଲି, କେତେ କଲେଜ ଛାତ୍ର ଭିତରକୁ ପଶିଯିବାକୁ ଜବରଦସ୍ତ କରିବାରୁ ମୃଦୁ ଲାଠିଚାଳନା କରିବାକୁ ପଡ଼ିଲା । ମନେ ପଡ଼ିଗଲା ବିଶ୍ୱ ହିନ୍ଦୀ ସମ୍ମିଳନୀ କଥା । ଖାଇବାଯାଏ ତ ଆମେ ପହଞ୍ଚି ପାରିଲୁ ନାହିଁ । ଆମର ଜଣେ ଛାତ୍ର କିଛି ଲୋକଙ୍କ ମୁଣ୍ଡ ଉପରେ ଚଢ଼ି ହି ହାତରେ ଦି ପ୍ଲେଟ ଚଣା ଉଦ୍ଧାର କଲେ । ଆମେ ଆଠ ନ'ଜଣ ସେଇଆ ଖାଇ ରହିଲୁ । ଅଥଚ ଆମ ଆଖି ଆଗରେ ଜଣେ ବୀର ପୂରା ଆଇସକ୍ରିମ ଥାଳ ଉଠେଇ ନେଉଥିବା ବେଳେ ଅନ୍ୟ ଜଣଙ୍କ ଆକ୍ରମଣରେ କପରି ସେଇ ଥାଳ ଦଶ ପନ୍ଦର ଜଣଙ୍କ ମୁଣ୍ଡରେ ଆଇସକ୍ରିମ୍ ବର୍ଷା କରି ତାଙ୍କୁ କାଦୁଅ କରିଦେଲା ଦେଖିଲୁ । ବୁଫେ ଖାଇବାରେ କିଏ ଖାଲି କୁକୁଡ଼ା ନେଇ ପଳେଇଲାଣି ତ କିଏ ରସଗୋଲା । ଏ ସବୁ ଦେଖିଲେ ଯେଉଁ ମହାଭୋଜ ନଜରକୁ ଆସେ ତା ପାଖରେ ସାହିତ୍ୟ କେମିତି ଉଧେଇବ ସନ୍ଦେହ ହୁଏ ।

ଏସବୁ ପରେ ବି ସାହିତ୍ୟ ସଭାର ଲୋଭ ଛାଡ଼ ହୁଏ ନାହିଁ । ସାହିତ୍ୟ ତ କୋଉକାଳୁ ଛାଡ଼ିଲେଣି । ମୁଁ ଭାଲୁକୁ ଛାଡ଼ିବାକୁ ଚାହିଁଲେ ବି ଭାଲୁ ମତେ

ଗୁଡ଼ିକୁ ନାହିଁ । ଆଜ୍ଞା ଆପଣ ମୁଖ୍ୟ ବକ୍ତା, ସମ୍ମାନିତ ଅତିଥି, ପ୍ରାରମ୍ଭିକ ଭାଷଣ ପାଇଁ କେତେ ଯୁବ ଲେଖକ ଅନେଇ ବସିଛନ୍ତି । ଭିତର ଟିକେଏ ଉଲୁସି ଉଠେ । ହଉ ଯିବା । ପୁଣି ସେଇ ମାଟିର ଡାକ । ଆପଣ ଏତେ ବଡ଼ ଲୋକ । ନିଶ୍ଚେ ନିଜ ଖର୍ଚ୍ଚରେ ଆସିବେ । ଏତେ ବଡ଼ଲୋକ ଯେତେବେଳେ ନିଜ ଖର୍ଚ୍ଚରେ ନ ଗଲେ ନାକ କଣ ତଳେ ପଡ଼ିଯିବ । ଇଏ କଣ ଆଜିକାର କଥା । କୋଉକାଳୁ କଥା ଅଛି ମାଗିନିଆଙ୍କ ଆଣ୍ଠୁ ମଥା ଦିହ । କଶୋସ୍ତ-ବାବୁଙ୍କ କଥାରେ କହିଲେ, ନାଟୁଆଙ୍କ ଆଣ୍ଠୁ ତେଲ ହଳଦି ।

ପ୍ରବାସୀ ଓଡ଼ିଆ ହବାର ଦୁଃଖ ଯେ ନା ପ୍ରବାସରେ ନା ଓଡ଼ିଶାରେ ଓଡ଼ିଆ ମାନ୍ୟ ଦେବାକୁ କେହି ରାଜି ନୁହନ୍ତି । ନିଜ ଘରେ ନିଜେ କୁଣିଆଁ । ମଜା ହେଉଚି ଯେ ପ୍ରବାସୀଙ୍କୁ ଆଉ ଓଡ଼ିଆଙ୍କୁ ଏକା ପରି ସମାଲୋଚନା କରିବା ଅଧିକାର ଆମେ ହାସଲ କରି ନେଇଚୁ । ତେଣୁ ହେ ବନ୍ଧୁଗଣ, ଏହାକୁ ଦେହକୁ ନେବେ ନାହିଁ । ଏହା କାହାରି ପ୍ରତି ଉଦ୍ଦିଷ୍ଟ ନୁହେଁ । ଜଣେ ଅଜ୍ଞାତ ସାହିତ୍ୟକଙ୍କର ବିଳମ୍ବିତ ପ୍ରଳାପ ମାତ୍ର ।



# ଜଳଖିଆ

ପାଣି ଯଦି ପିଆ, ଜଳ କାହିଁକି ଖିଆ ? ପୁଣି ଗଡ଼ରେ ଖିଆ ହଜମ ହେଉ ନହେଉ ସକାଳୁ ଯେଉଁ ବଳକ ଖିଆଯିବ ତାକୁ ଯେ ଜଳଖିଆ କୁହାଯିବ ଯାର ବା ତାତ୍ପର୍ଯ୍ୟ କ'ଣ ? ଦେଶକେ ଫାଙ୍କ ନଈକେ ବାଙ୍କ । ଆମ ଓଡ଼ିଆଙ୍କ ପାଣିପିଆ ସାଙ୍ଗରେ ବଙ୍ଗଳାର ଜଳଖିଆ କେମିତି ମିଶାଇ ପାରିଛି, ଆଉ ଅର୍ଥ ଫେରରେ ନୂଆ ରୂପ ନେଇଛି ସେକଥା ଭାଷା ପଣ୍ଡିତଙ୍କ ମୁଣ୍ଡବଥା ।

ପିଲାଦିନେ ମୋ ଜଳଖିଆ ଥିଲା ବଡ଼ାଭାତ । ଏ କଥା କହିଲେ ମୋ ପିଲାଙ୍କୁ ଆଜ ଆଶ୍ଚର୍ଯ୍ୟ ଲାଗୁଛି । ସକାଳୁ ଉଠି ଭାତ ? ମୁଁ ଯଦି କହେ, ସକାଳ ଗାଧୁଆ ପଖାଳ ଖିଆ, ବାହାରେ ଯେବେ ଯାଏ···ଘରଣୀ ପାଟି କରନ୍ତି ଥାଉ ଥାଉ । ତମ ପିଲାଦିନ ଏକାଳ ପିଲାଦିନରେ ବହୁତ ଫରକ୍ । ସକାଳୁ ଥଣ୍ଡା ପାଣିରେ ଗାଧୋଇବ କଣ ସନ୍ନିପାତ ହେବା ପାଇଁ ? ତମ ଘରେ ଚୂଲି ନିଆଁ ଲିଭୁ ନଥିଲା ବୋଲି ସବୁବେଳେ ହାଣ୍ଡିରେ ଭାତ । ଆଜିର ବ୍ୟବସ୍ଥାରେ ପଖାଳ ଆସିବ କୋଉଠୁଁ, ଖାଉଛି କିଏ ?

ମୁଁ କଥାଟା ବାଆଁରେଇ ପଚାରିଲି ଆଜ ଜଳଖିଆ କଣ ? ପାଉଁରୁଟି ଗୁହା । ଆମ ଘରକୁ ନୂଆ ଓଡ଼ିଆ ଶିଖିଥିବା ଗୋଟିଏ ଆଙ୍ଗ୍ଲୋଇଣ୍ଡିଆନ ଝିଅ ଆସିଥିଲା । କହିଲା, ଆଣ୍ଟି, ବ୍ରେଡ୍ ଟି ନକହି ପାଉଁରୁଟି ଗୁହା ଗୋଟାଏ କଣ କହୁଛ । ସମସ୍ତେ ହସ ମାଡ଼ିଲା । ମୁଁ ଟିକିଏ ଜୋରରେ ହସିଦେଲି । ଘରଣୀ ଚଟିଗଲେ । ହଁ ହଁ, ଆମେ ବି. ଏ., ଏମ୍. ଏ. ପଢ଼ିନୁ କି ବିଲାତରେ ରହିନୁ ବୋଲି ତମର ହସ । ଗୋଟିଏ ମେମ୍‌ସାହେବ ବାହା ହେଲ ନାହିଁ ? ସିଏ ଝିଅ ଆଡ଼କୁ ଆଖି ମାରିଦେଲେ ।

ମୁଁ କହିଲି, ଗୋଟାଏ କଥା ମନେ ପଡ଼ିଗଲାରୁ ହସିଲି । ଥରେ ଜଣେ ବନ୍ଧୁଙ୍କ ଘରକୁ ଯାଇଥିଲି । ସିଏ ସକାଳୁ ଦେଲେ ବ୍ରେଡ୍‌ଟି । ସେଦିନ ସକାଳୁ ଇଲେକ୍‌ଟ୍ରି ନଥିଲା । ସବୁ କଳକବ୍‌ଜା ବନ୍ଦ । ବାସନ ଧୂଆ କଳ ବନ୍ଦ ହେବାରୁ ଅଇଣ୍ଠା ବାସନ ଧୂଆ ହୋଇନି । ଆଗଦିନ ପାର୍ଟି ହୋଇଥିଲା । ରୁଟି ସେକା ଯନ୍ତ୍ର କାମ କରୁନି । ଇଲେକ୍‌ଟ୍ରି ଚୂଲି ବି ବେକାର । ବହୁ

କଷ୍ଟରେ ବନ୍ଧୁପତ୍ନୀ ଗ୍ୟାସରେ ବିଖଣ୍ଡ ବ୍ରେଡ଼ ଉଷୁମ କରି ମୋ ଆଗରେ ଥୋଇଲେ । ଫ୍ରିଜ୍‌ରୁ ବହିର ବାହାର କରି କଣ୍ଠା ଛୁରୀ ଖୋଜୁ ଖୋଜୁ ରୁଟି ବିଖଣ୍ଡ ହାଡ଼ୁଆ ହେବା ଆରମ୍ଭ କଲାଣି । ମୁଁ କହିଲି ମତେ ଗୋଟାଏ ଗୃମୁଚ ଦିଅ । ଗୃମୁଚ ବେଣ୍ଟରେ ଅଣ୍ଡାରେ ପଥର ହୋଇଥିବା ବହିରରୁ କେଇ ଚେକା କାଢ଼ି ପଥୁରିଆ ରୁଟିରେ ଘଷିବାର ଅନୁଭବ ଆପଣମାନଙ୍କର ଅଛି ? ଥିଲେ ମୋ ହସିବା ମର୍ମ ବୁଝନ୍ତୁ ।

ମୋ ପିଲାଦିନେ ଚୂଡ଼ାରେ ଯେତେ ପ୍ରକାର ଜଳଖିଆ ହେଉଥିଲା ଭାବିଲେ ମନ ପୂରିଉଠେ । କଞ୍ଚାଚୂଡ଼ା ଦୁଧ, କଦଳୀ, ଚିନି; ଚୂଡ଼ା, ଘିଅ, ଚିନି; ଚୂଡ଼ା ଦହି, ଗୁଡ଼; ଚୂଡ଼ା, ନଡ଼ିଆ କୋରା, ଘିଅ, ଚିନି; ପୁଣି ଚୂଡ଼ାଘସା; ପଞ୍ଚୁରି, ଚୂଡ଼ା ଧନୁଲା, ଚୂଡ଼ା ପଖାଳ, ଚୂଡ଼ା ଭଜା, ଚୂଡ଼ା ଦୋଭଜା, ହୁଡ଼ୁମ, ଚୂଡ଼ା ମୁଆଁ ଏମିତି କେତେ କଣ । ଆଜି ଯୋଉମାନେ ସ୍ୱାସ୍ଥ୍ୟକର ଖାଦ୍ୟ ବିଷୟରେ ଭାଷଣ ଦେଉଛନ୍ତି, ସେମାନେ ଏଇସବୁ ଜଳଖିଆ କଥା କେବେ ଭାବିଛନ୍ତି କି ?

ମୁଁ ସିମଲା ଯାଇଥିଲି । ସକାଳ ବୁଲି ସାରି ଫେରିଲା ବେଳକୁ ଜଳଖିଆ ଦୁଇଟା ବଡ଼ ଜଲବି ଆଉ ବଡ଼ ଗ୍ଲାସରେ ଗ୍ଲାସେ ଦୁଧ । ସିନ୍ଧି ବନ୍ଧୁଙ୍କ ଘର ଜଳଖିଆ କଥା ମନେପଡ଼ିଲା । ଘିଅ ପଚପଚ ତିନି ପ୍ରକାର ମିଠାରେ ଜଳଖିଆ ଆରମ୍ଭ, ଆଉ ସେକା ପାମ୍ପଡ଼ରେ ଶେଷ । ସେକା ପାମ୍ପଡ଼ର ଅର୍ଥ ବୁଝେଇ ବନ୍ଧୁ କହିଲେ, ଇଏ ହେଉଛି ବ୍ଲଟିଂ ପେପର । ଖାଇବା ନଳୀରେ ଯୋଉଠି ଯାହା ଘିଅ ଲାଗିଥିବ ସବୁ ସଫା କରିଦେବ । ଆଉ ଏଥିରେ ଯେଉଁ କଳାଜିରା ଜୁଆଣୀ ସିଏ ହେଉଛି ହଜମୀ । ଖାଇବା ସାଙ୍ଗେ ସାଙ୍ଗେ ଔଷଧ, !

ପଞ୍ଜାବ ଜଳଖିଆ ଆଳୁ, ମୂଳା କମ୍ବା ପାଳଙ୍ଗ ପରଠା ଆଉ ଦହି । ଯାହାକୁ ଖାଇ ଗ୍ଲାସେ ଲସି ପଇଦେଲେ ମୋ ପରି ଲୋକଙ୍କର ଦିନକର ବ୍ୟବସ୍ଥା ହୋଇଗଲା ବୋଲି ଜାଣନ୍ତୁ । କିନ୍ତୁ ପଞ୍ଜାବୀ ଭାଇଙ୍କ ଜଳଖିଆ ହ' ତିନିପଟ ପରଠା, ଭରତା ବା ସବ୍‌ଜି ଆଉ ଲସି ।

ଇଡ଼ଲି, ଦୋସା ଆଜି ସର୍ବଭାରତୀୟ ଜଳଖିଆ । ସକାଳୁ ଚକୁଳି ପିଠା ଆଉ ବରା ଖାଇବାକୁ ଯିଏ ନାକ ଟେକନ୍ତି ସିଏ ଇଡ଼ଲି ବଡ଼େ ଆଉ ଦୋସା ଖାଇବା ଦୋଷାବହ ମନେ କରନ୍ତି ନାହିଁ । ବଡୋଉ ଯାହାକୁ ମରହଟିଆ ମନେହୁଏ ସେମାନେ ଉଭପମ୍‌କୁ ଦିବ୍ୟ ଭୋଜନ ବୋଲି ମନେ କରୁଛନ୍ତି ।

ସଭ୍ୟ ଖାତାରେ ନାଁ ଲେଖେଇବାକୁ ହେଲେ ନିଜ ବାଟ ଛାଡ଼ି ଅନ୍ୟ ବାଟରେ ଚାଲ । ପଡ଼ ପଛକେ ଖାଲରେ ଖମାରେ ।

ମୁଁ ଯେତେବେଳେ ମହାରାଷ୍ଟ୍ରର ପ୍ରଥମେ ଚାକିରି ନେଇ ଆସିଲି ସେଠିକାର ବିଶ୍ୱବିଦ୍ୟାଳୟ କର୍ତ୍ତାମାନେ ଜଳଖିଆରେ ମତେ ଭେଟିବାକୁ ମଫୁଧା କଲେ । ସେଇ ଜଳଖିଆ ପ୍ରାୟ ଅଢ଼େଇ ଘଣ୍ଟା ଚାଲିଥିଲା । ସେ କଥା ନ କହିଲେ ଅନେକ କଥା ଅକୁହା ରହିଯିବ । ପ୍ରଥମେ ଆସିଲା ଫଳ । ଅମୃତଭଣ୍ଡା, ଆମ୍ବ, ସପୁରି ଆଉ ତା ସାଙ୍ଗକୁ ଗ୍ଲାସେ କମଳା ରସ । ଏତିକରେ ପେଟଭର୍ତ୍ତି । ତା ପରକୁ ଆସିଲା ମସଲା ଦୋସା, ସମ୍ବର, ଚଟଣି, ଇଡ଼ଲି, ବଡ଼ା ଆଉ ଉପମା । ଏ ସବୁ ଦେଖି ମୋ ମନରେ ଡର ହୋଇଗଲା । ସବୁଥିରୁ ଟିକିଏ ଟିକିଏ ଚାଖିବାକୁ ହେବ । କୌଣସିମତେ ଚାହା କଫି ଆସିଲେ ରକ୍ଷା । କିନ୍ତୁ ଆସିଲା କଣ ? ବ୍ରେଡ୍ , ବଟର, ଜାମ୍, ଆମଲେଟ । କଫି ପିଇସାରି ଉଠିଲା ବେଳକୁ ଚାଲିବାକୁ ବି ଦେହରେ ବଳ ନାହିଁ । ଭଦ୍ରତା ଖାତିରରେ ସମସ୍ତେ ଭରପୂର ।

ମହାରାଷ୍ଟ୍ରର ସାଗୁଦାନା ଖିଚୁଡ଼ି, ଧୋକା, ଚଉଡ଼ା ଯିଏ ଖାଇଛି ସିଏ ତା ମଜା ଜାଣେ । ଗୁଜୁରାଟ, ଥେପ୍ଲା, ପୁରି, ଚୁଡ଼ା, ଗାଣ୍ଠିଆ, ମୁଡ଼ୁକୁ ସାଙ୍ଗକୁ ନାନା ସୁଆଦିଆ ମିଠା ଆଉ ଲୁଣିଆ ଜଳଖିଆର ତୁଳନା ନାହିଁ । ହେଲେ ବଙ୍ଗଳାର ସନ୍ଦେଶ, ରସଗୋଲା ଆଉ ମିଷ୍ଟିଦେଇ ଭୋଜନ ରସିକଙ୍କ ସ୍ୱର୍ଗ । ଆଜି ଆଧୁନିକତାର ଚାପରେ ପୋଷାକର ବିଭିନ୍ନତା ପରି ଖାଦ୍ୟର ବିଭିନ୍ନତା ଲୋପ ପାଇବାକୁ ବସିଲାଣି । ପୋଷାକ ଯେମିତି ଇଉନିସେକ୍ସ, ଖାଇବା ସେମିତି ବ୍ରେଡ୍ ବଟର ଚାହା କିମ୍ବା ଇଡ଼ଲି ଦୋସା, ଯାହା ସାଙ୍ଗକୁ ପୁଣି କର୍ଣ୍ଣଫ୍ଲେକ୍ସ । କିଏ କହିଲା, ଆମ ଚୂଡ଼ା ତାଙ୍କ କର୍ଣ୍ଣଫ୍ଲେକ୍ସରୁ କୋଉ ଗୁଣରେ ହୀନ ? ଆଉ ଆମ ଚକୁଳି ? ପିଠଉ ଚକୁଳି, ବୁଢ଼ା ଚକୁଳି ପିଆଜ ଧନିଆଁପତ୍ର ପକା ଚକୁଳି, ଛତୋଉ ଛୁଞ୍ଚିପତ୍ର ଇଏ ସବୁ ଥାଉ ଥାଉ ଆଧୁନିକତା ପାଇଁ ହଟହଟା କାହିଁକି ? ଆମ ବେଙ୍ଗିଂର ଝିଅମାନେ ସମୟ ନ ମିଳିଲେ ପାଉଁରୁଟି ଆଉ ସମୟ ମିଳିଲେ ଘରୁଆ ଜଳଖିଆ । ଆଉ ଆମେ ଯେଉଁ ଗରିବ ପଡ଼ାରେ କାମ କରିବାକୁ ଯାଉ, ସେମାନଙ୍କ ଜଳଖିଆ ନଳପାଣି, ବେଳେ ବେଳେ ପଖାଳ ପାଣି ।

# ହାତ

ମୋର ଜଣେ ଆଇ.ଏ.ଏସ୍‌. ବନ୍ଧୁ କହିଲେ, ଆପଣ ଏତେ ସବୁ ଲେଖୁଛନ୍ତି, ହାତ ବିଷୟରେ ଲେଖୁନାହାଁନ୍ତି । ଆପଣ କଣ କଂଗ୍ରେସ ବିରୋଧୀ ?

ମୁଁ କହିଲି ମୁଁ ଯଦି କଂଗ୍ରେସ ବିରୋଧୀ ହୋଇଥାନ୍ତି, ତେବେ ଆପଣ ମତେ ହାତରେ ନ ମାରି ଭାତରେ ମାରୁଥାନ୍ତେ । ଆପଣମାନଙ୍କ ଅଧୀନରେ ଚାକିରି କରି ଆମେ ତ ଆପଣଙ୍କ ହାତଟେକାକୁ ଚାହିଁରହିବୁ । ତା'ଛଡ଼ା ଆପଣ କଣ ମତେ ଆପଣା ହାତରେ ଆପଣା ଜିଭ କାଟିବାକୁ କହୁଛନ୍ତି ? ଆପଣା ହସ୍ତେ ଜିହ୍ୱା ଛେଦ, କେ ତାର ଅଛି ପ୍ରତିବାଦ ?

ବନ୍ଧୁ ଟିକିଏ ମନ ଊଣା କରି କହିଲେ, ଆଜ୍ଞା ଆଜିକାଲି କଣ ଆମ ହାତରେ କିଛି ଅଛି ? କାହା ହାତରେ ବା କ'ଣ ଅଛି ? ଆମେ ସମସ୍ତେ ବଡ଼ସାନ କରିଣି । ସମସ୍ତେ ଉପରକୁ ଅନେଇ ବସିଛନ୍ତି । ଯାହା କରିବେ ସାଇଁ । ତା କାହାରି ହାତରେ ନାଇଁ । ଏ ଜୀବନରେ ସୁଖ ନାହିଁ ।

ମୁଁ କହିଲି, ବୁଝିଲି ବନ୍ଧୁ ତମେ ସବୁ ହେଲି କର୍ତ୍ତାଭଜା । ସେଇଥିପାଇଁ କର୍ତ୍ତାଙ୍କର ହାତଗୋଡ଼ ଧରିବା ତମର କର୍ତ୍ତବ୍ୟର ଅଙ୍ଗ । ତମେ ଜଣେ କର୍ତ୍ତା । ଅପର ଲୋକେ ତମ ହାତଗୋଡ଼ ଧରୁଛନ୍ତି । ଏଇଟା ହେଲା ଆମ ଶାସନ ସଂସ୍କୃତି । ଆପଣ ତ ଜାଣିଛନ୍ତି 'ସୁଖ ବୋଲି ଯାହା ଜନନେହେ ବିଶେ, ହାତୁ ଆସେ ହାତେ ପଡ଼ିବା ପାଇଁ ସେ । ଜଗନ୍ନାଥ । ହାତ ନ ଥାଇ ଥୁଣ୍ଟା । ରୂପରେଖ ନାହିଁ ହେ ଶୂନ୍ୟଦେହୀ । ତମ ସାଇଁ କର୍ତ୍ତା । ଆମ ସାଇଁ କର୍ତ୍ତା, କର୍ମ, କରଣ ।

ବନ୍ଧୁ ରସିକ । କହିଲେ ଆପଣଙ୍କ ଜଗନ୍ନାଥଙ୍କ ରତ୍ନମୁଦି ଗଉଡ଼ୁଣୀ ହାତରେ ଦେଖି ଗଜପତି ଚମକି ପଡ଼ିଲେ । ଜଗନ୍ନାଥ ଯଦି ଅଣହାତିଆ ତେବେ ରତ୍ନମୁଦି କଣ ଅଣ୍ଟାରେ ଖୋସିଥିଲେ ? ନା ସାଇବାବାଙ୍କ ପରି

ହାତର କସାମଡରୁ ସେ ଶୂନ୍ୟରୁ ରତ୍ନମୁଦ ବାହାର କର ଗଉଡ଼ୁଣୀଙ୍କି ଦଅନ୍ତ ?

ମୁଁ କହଲ ବୁଝିଲ ବନ୍ଧୁ, ବଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ଓ ନାଶ ଯାହାର ବାଁ ହାତର ଖେଳ ତା କଥା ବୁଝିବାକୁ ହେଲେ ଗହ୍ୱରକୁ ଯିବାକୁ ହେବ । ହାତେ ମାପି ଗୃଖଣ୍ଡେ ଗୃଲବାକୁ ପଡ଼ବ । ଶୁଙ୍ଘିଂବା ନ ଶୁଙ୍ଘିଂବା, ଦେଖିବା ନ ଦେଖିବା, ଛୁଇଁବା ନ ଛୁଇଁବା, ଗୃଲବା ସ୍ଥିର ରହବା ଭିତରେ ଯାହାର ପ୍ରଭେଦ ନାହିଁ ତାର ହାତଗୋଡ଼ ନାକ କାନର କ ଦରକାର ? ଆପଣା ମାପରେ ଠାକୁରଙ୍କୁ ଦେଖୁଚନ୍ତ ବୋଲ, ଆପଣା ହାତରେ ତାଙ୍କ ମୂର୍ତ୍ତି ଗଢ଼ୁଚନ୍ତ ବୋଲ ତାଙ୍କୁ ଆପଣା ମନଲାଖି ରୂପ ଦେଉଛନ୍ତ । ପୁଣ ଦେଉଳ ବେଢ଼ାରେ ହାତେ ଦେଉଳରେ ବାରହାତ ଦଅଁ । ଗୃରହାତ ବଷ୍ଣୁ, ଆଠ ବା ଦଶହାତ ଦୁର୍ଗା, କୋଡ଼ିଏ ହାତିଆ ରବଣ, ଦୁଇ ସହସ୍ର ହାତ ଥିବା ସହସ୍ରାର୍ଜୁନ ଇଏ ସବୁ ତମ ମନର କଳ୍ପନା, ତମ ହାତର ଫେର । ଆଉ ଜଗନ୍ନାଥ ? ସିଏ ହାତପାହାନ୍ତାରେ ପୁଣି ଧରଛୁଆଁ ବାହାରେ । ମନ ସଫାକର ହାତ ବଢ଼େଇଲେ ସିଏ ଛାଏଁ ଧରଦେବେ । ତମେମାନେ ସିଏ ପୁଅ ମୁଣ୍ଡରେ ହାତେ ତେଲଘଡ଼ରେ ହାତେ ହେଇ ବସିଚ, ତମ ପାଇଁ ସିଏ ଅପ୍ରାପ୍ୟ । ଆଉ ଗଉଡ଼ୁଣୀଙ୍କ କଥା କହୁଚ ? ତମେ ସବୁ ରସିକ ଗଉଡ଼ୁଣୀଙ୍କି ଦେଖିଲେ ଦୁଧରେ ପାଣି କେତେ ? ବୋଲ ପଗୃରବା ଲୋକ, ଜଗନ୍ନାଥଙ୍କ ଗଉଡ଼ୁଣୀ ତତ୍ତ୍ୱ ବୁଝିବ କାହୁଁ ? ଉଦ୍ଧବ ପର ପାରଲ ନାହିଁ । ଉଦ୍ଧବ ମନରେ ହେଲା ଗୋପୀଭବ । କୃଷ୍ଣଙ୍କର ଏଡ଼େ ପ୍ରିୟ କେମିତ ? ଉଦ୍ଧବଙ୍କ ସନ୍ଦେହ ମୋଚନ ପାଇଁ କୃଷ୍ଣ ଜରେଇଲେ । ବଇଦଙ୍କ ହାତରେ କୁହେଇଲେ ଯେ ତାଙ୍କୁ ସବୁଠୁ ଭଲ ପାଉଥିବା ଲୋକର ପାଦଧୂଳ ନଖରୁ ଶିଖ ଯାଏ ବୋଳଲେ କୃଷ୍ଣ ଭଲ ହେବେ । ଉଦ୍ଧବଙ୍କୁ ଡକା ପଡ଼ଲା । ଉଦ୍ଧବ ଜଣ ଜଣ କର ଆଠ ରଣୀଙ୍କି ନେହୁର ହେଲେ, ପାଦଧୂଳ ଦଅ, କୃଷ୍ଣ ଭଲହେବେ । ତମଠୁ ତାଙ୍କୁ ବେଶୀ ଭଲ ପାଇବା ଲୋକ ଆଉ କିଏ ଅଛି ? ଏକଥା ଶୁଣି ସବୁ ରଣୀ କାନରେ ହାତ ଦେଲେ । ଛି ଛି, କିଏ ଏ ପାପ କରବ ? ପାଦଧୂଳ ସ୍ୱାମୀଙ୍କ ମୁଣ୍ଡରେ ମାର କଣ ନର୍କକୁ ଯିବେ । ଉଦ୍ଧବ ଗୋପୀଙ୍କ ପାଖକୁ ଧାଇଁଲେ । ଗୋପୀଏ କୃଷ୍ଣଙ୍କ ଅସୁଖ ଶୁଣି ଛାତରେ

ହାତ ବାଢ଼େଇଲେ, ମୁଣ୍ଡରେ ହାତ ଦେଲେ, ହାତ ପିଠିରେ ଆଖିରୁ ଦରଦର ଝରୁଥିବା ଲୁହ ପୋଛିଲେ । ସମସ୍ତେ ପାଦ ବଢ଼େଇଦେଲେ । ଯେତେ ଇଚ୍ଛା ସେତେ ଧୂଳି ନିଅ । କୃଷ୍ଣଙ୍କଠି ବୋଲି । ଉଦ୍ଧବ ଆଶ୍ଚର୍ଯ୍ୟ ହେଲେ । ତମର ନର୍କକୁ ଯିବା ଡରନାହିଁ ? ଜବାବ ମିଳିଲା କୃଷ୍ଣ ଭଲହେବା ଆମର ସ୍ୱର୍ଗ । ନର୍କକୁ ଯିବା କଥା ଭାବିବାକୁ ବେଳ କାହିଁ । ଉଦ୍ଧବ ଜବାବ ପାଇଲେ । ତମେ ପାଇଲ କି ନାହିଁ ?

ବନ୍ଧୁ କହିଲେ ସେଇ ପୁରୁଣା ଧର୍ମ, ପୁରାଣ କଥା କହି ଆପଣମାନେ ଲୋକଙ୍କୁ ଭଣ୍ଡୁଛନ୍ତି । ଆମେ ଲୋକଙ୍କୁ ବୈଜ୍ଞାନିକ କଥା ଶିଖେଉଚୁ । ମୁଁ କହିଲି, ହଁ । ପିଲାଦିନେ ଆମେ ଗାଁରେ ହାତ ମାଟି କରୁଥିଲୁ, ବାଁହାତରେ ଛଅଣ୍ଟ ହେଉଥିଲୁ । ଆଜକାଲି ସାବୁନରେ ହାତ ଧୋଉଚୁ, ଡାହାଣ ହାତରେ କାଗଜରେ ଗାଣ୍ଡି ପୋଛୁଚୁ । ଆଗେ ହାତକାମର କଦର ଥିଲା, ଆଜି ମେସିନ୍ କାମ । ଏଇତ ତମର ବୈଜ୍ଞାନିକତା । ଗାନ୍ଧି କହୁଥିଲେ ଆମେ ଶବ୍ଦ ବ୍ୟବହାର ପାଇଁ କଳକର ମଞ୍ଜ କଥାକୁ ଭୁଲିଯିବା ଆମ ଜାତୀୟ ଲକ୍ଷଣ ହୋଇଗଲାଣି । ସଂସ୍କୃତି କଣ ଆଧୁନିକତାର ବିରୋଧୀ ? ଆପଣମାନଙ୍କର ମୁଣ୍ଡକୁ ହାତ ପାଇଗଲା ବୋଲି ଆପଣମାନେ କଣ ମାନଥାନ ଭୁଲିଯିବେ ? ପୁରୁଣା କଥା ବିଚାରନ୍ତୁ । ବଳୀ ଦାତା, କର୍ଣ୍ଣ ଦାତା, ଦାତା ଜୀମୂତବାହନ । ହରିଚନ୍ଦନ ଶିବ ଦାତା ମୋକ୍ଷ ଦାତା ଜନାର୍ଦ୍ଦନ । ହାତରେ ପାଣି ଟେକିଦେଲେ ସମ୍ପତ୍ତି କି ଛାର ଜୀବନ ବି କିଛି ନୁହେଁ । ଆଉ ହାତ ପାତି ନେବାକୁ ସ୍ୱୟଂ ଭଗବାନ ଆସୁଥିଲେ । ଦବା-ନବା ଉଭୟରେ ମହତ୍ତ୍ୱ ଥିଲା । ଆଜି ଯୋଉଠି ସେଇଠି ହାତ ପତେଇବା କାଳରେ ଦବା ନବା ଉଭୟ ଲୋକ ନ୍ୟୁନ । ହାତଗୁଞ୍ଜା ନ ଦେଲେ ଆଜର ସାଇଁ ବି ଅଚଳ ।

ବନ୍ଧୁ କହିଲେ, କଥା ଅନେକ ବାଟ ଗଲାଣି । ଆଉ କଏ ହେଇଥିଲେ ହାତ ଉଠାଉଠି ହୁଅନ୍ତାଣି । ଆପଣମାନଙ୍କର କବିତୁଣ୍ଡ । କାହା ହାତରେ ଯିନା ବାଟୁଳିଖଡ଼ା, ଆପଣଙ୍କ କଥାଗୁଡ଼କ ବାଟୁଳି । ଆଜି ଦନୁଟା ମୋର ଭଲ ନୁହେଁ । ମୋର ହାରିବା ଯୋଗ ।

ମୁଁ କହିଲି ବୁଝିଲି ବନ୍ଧୁ, ହାତରେ ପାଞ୍ଚ ରଖି କଥା କହିବା ମୁଁ

ଶିଖି ନାହିଁ । ହାତର ରେଖା ଗଣି ଦିନ, କାଳ, ଯୋଗ ଠିକ୍ କରିବା ମୋତେ ଆସେ ନାହିଁ । ପାଞ୍ଚପା ବାମନଙ୍କୁ ଡରେଇବା କି ପାଞ୍ଚହାତା ମରଦଙ୍କୁ ଡରିବା ମୋର ଗୁଣ ନୁହେଁ । ଏଇସବୁ କାରଣରୁ ମୁଁ ଯାହା ହାତ ଧରିଚି ସିଏ ବଡ଼ ନାରାଜ । ରୋକଠୋକ କଥା କହିଲେ ହାତେ ହାତେ ଫଳ ଆଉ ସେ ଫଳ ମିଠା ନୁହେଁ । ତମେ ବନ୍ଧୁ ବୋଲି ଏତେ କଥା ହେଲି । ବୁଝିଲ ବନ୍ଧୁ, ହାତ ଅଳସେ ନଖ ବଙ୍କା । ନଖକୁ ସିଧା କରୁ କରୁ ହାତ କଥା ଭୁଲିଯାଇଥିଲି । ନିଜ ହାତ ଶଙ୍ଖା ଦର୍ପଣ । ତମ ସାଙ୍ଗରେ ଚୁଟି ଧରାଧରି କାହିଁକି ? ଆଜି ଏଣ୍ଡକରେ ହାତ ମିଳେଇବା । ହାତ ଧରାଧରି ହୋଇ ଘରୁ ବାହାରିଲେ, ଯୋଉମାନେ ଆମ ଅଲୋଚନାକୁ କଳି ବୋଲି ବଗୁରୁଚନ୍ତି ସେମାନଙ୍କ ସନ୍ଦେହ ଦୂର ହେବ । ତମେ ହାତ ଉଠେଇ ତାଙ୍କୁ ଅଭୟ ଦେବା ସାଙ୍ଗେ ସାଙ୍ଗେ ଚେତାବନୀ ଦେବ ସେ ଲୁଚଲୁଚ କଥା ଶୁଣି କଥାକୁ ·ମାଜି ମୋଟ କରିବାଠାରୁ ବଡ଼ ଦୋଷ ନାହିଁ ।



# କେତୋଟି ଝିଅ ଆଉ ନିମନ୍ତ୍ରଣ

'ଅଙ୍କଲ, ଆମ ଘରକୁ କାହିଁକି ଆସୁନ ?' ପାଞ୍ଚ ବର୍ଷର ସାନ ଝିଅଟି ପଚାରିଲା । ମୁଁ କହିଲି, 'ତୋ ମା' ମୋତେ ଡାକୁନାହିଁ ।'

ମା' ପାଖରେ ଛିଡ଼ା ହୋଇଥିବା ଆଉଜଣଙ୍କୁ ଅନେଇ କହିଲେ, ଶୁଣ, ମୁଁ କୁଆଡ଼େ ଡାକୁନି । ମତେ ଅନେଇ କହିଲେ, ବୋହୂକୁ ନେଇ ଆମ ଘରକୁ ଆସନ୍ତୁ । ସିଏ ଆମ ଘରକୁ ଆସିନି । ମୁଁ କହିଲି, ମୁଁ କଣ କହୁଥିଲି ? ହୁଏତ ସ୍ତ୍ରୀଙ୍କୁ ନେଇ ଆସ, ନୋହିଲେ ଝିଅକୁ ନେଇ ଆସ, ନୋହିଲେ ବୋହୂକୁ ନେଇ ଆସ । ମୋର ଆସିବାଟା ଉପଲକ୍ଷ ମାତ୍ର । ଜୀବନଟାସାକ ଉପଲକ୍ଷ ହୋଇଗଲା । ଏଇ ବୁଢ଼ାଦିନେ ଏମିତି ନିମନ୍ତ୍ରଣରେ ଯିବାକୁ ମନ ହେଉନାହିଁ । ଭଦ୍ରମହିଳା ହସିଦେଇ ଚାଲିଗଲେ ।

ଆଜକୁ ତିରିଶ ବର୍ଷ ତଳର କଥା । ଆମେ ଏକାସାଙ୍ଗରେ ପଢ଼ୁଥାଉ । ଝିଅଟି ଆସି କହିଲା, ଭାଇ, ମା' ତୁମକୁ ଦେଖିବାକୁ ଡାକୁଛନ୍ତି । ମୁଁ ଘରକୁ ଗଲି । ମୋ ବୋଉ ତ ଗାଁରେ । ବୋଉ ବଦଳରେ ବୋଉ ମିଳିଲା । ତା'ପରେ ଶାଢ଼ିରେ ଡାଗଦା । ଭାଇ, ଆଜି ସାନଭଉଣୀର ଜନ୍ମଦିନ । ଭାଇ, ବାପା କହୁଚନ୍ତି ମତେ ଟିକିଏ ପଢ଼ାରେ ସାହାଯ୍ୟ କର । ମା' କହିଲେ, ପୁଅ, ତୋ ଜିମାରେ ଝିଅକୁ ତମ କ୍ଲାସ ପିଲାଙ୍କ ସାଙ୍ଗରେ ବଣଭୋଜିକୁ ପଠେଉଚି । ଏମିତି ଆଦର ଭିତରେ ନିଜକୁ ହଜେଇ ଦେଇ ନିଜକୁ ନିଜେ ଭୁଲିଗଲି । ସାଙ୍ଗମାନେ ଥଟ୍ଟାଟାପରା କଲେ । ହଠାତ୍ ଧକ୍କା ପହଞ୍ଚିଲା ଯେତେବେଳେ ଜାତି ବନ୍ଧୁ ତାରେ ବାଡ଼ ପକେଇଲା । ଏ ଭିତରେ ମୋର ବାହାଘର ହେଇଯାଇଚି । ବାପା ବୋଉ ଯୋଉଠି ଠିକ୍ କଲେ, ବନ୍ଧୁମାନେ ଯୋଉଠି ହଁ ଭରିଲେ । ହଠାତ୍ ଦିନେ ଭଦ୍ରମହିଳାଙ୍କ ସାଙ୍ଗରେ ଦେଖା । ପଚାରିଲେ, କଉ, ତମେ ବାହା ହୋଇଗଲ କେମିତି ? ମତେ ଟିକିଏ ପଚାରିଲ ନାହିଁ ? ମୁଁ କହିଲି, କାହିଁକି ମୋ ବାହାଘର କଥା ସମସ୍ତେ ତମେ ଜାଣିଥିଲ । ତମ ପାଖକୁ ନିମନ୍ତ୍ରଣ ବି ଯାଇଚି । 'ହଁ, ଲୌକିକ ନିମନ୍ତ୍ରଣ ପାଇଚି । ବାହା ଆଗରୁ ମତେ ଟିକିଏ ପଚାରିଥିଲେ କ'ଣ ହୋଇଥାନ୍ତା ?'

ସେତେବେଳେ ନିଜକୁ ଟିକେ ବୋକା ବୋକା ଲାଗିଥିଲା । ଯୁବକ ମନରେ ବେଳେବେଳେ ଝିଅ ସାନ୍ନିଧ୍ୟରୁ ମନରେ ଯେ ରଙ୍ଗ ନ ଉକୁଟୁଥିଲା ନୁହେଁ, କିନ୍ତୁ ରାଜନୈତିକ ଆଦର୍ଶବାଦର ବେଦୀରେ ଭଗବାନ ମତେ ପଥର କରି ପ୍ରାର୍ଥନା ପାଖରେ ଏ ରଙ୍ଗ ଆପଣାଛୁଏଁ ଲିଭିଯାଇଥିଲା । ଭାଇ ଭଉଣୀ ସମ୍ବନ୍ଧ ପାତିବା ଯେ ବାଆକୁ ବତା ଏ କଥା, ବିଚାରିବା ଭଳି ମାନସିକତା ସେତେବେଳେ ନଥିଲା ।

ଭାଇସ୍-ଚାନସେଲର ଡାକି କହିଲେ, ଦେଶୀବାବୁ, ଓଡ଼ିଶାରୁ ଗୋଟିଏ ନୂଆଝିଅ ଆସିଛି । ତାର ପଢ଼ାଖୁଣା ଦେଖିବାକୁ ମୁଁ ଅନୁରୋଧ କରୁଛି । ନୂଆ ଚାକେରି । ମୁଁ କହିଲି ସାର୍, ତାକୁ ପଠେଇଦେବେ । ମୁଁ ସପ୍ତାହରେ ଥରେ ଦିଥର କ୍ଲାସ ବାହାରେ ଭେଟି ତାକୁ ପଠେଇଦେବି । ସେଇ ଯେଉଁ ଅଳ୍ପବୟସୀ ଝିଅଟି ହରିଣ ଚାଲିରେ ମୋ ଘରକୁ ଆସିଲା, ଆସୁଆସୁ କହିଲା, ସାର୍, ମୁଁ ଆପଣଙ୍କୁ ନୂଆ ସାର୍ ଡାକିବି । ଏଥିରେ ମୋର ଆପତ୍ତି କରିବାର କିଛି ନଥିଲା । ମୁଁ କହିଲି, କ'ଣ ତୁମକୁ କଷ୍ଟ ଲାଗୁଛି ପଚାରି । କିଛି ସମୟ ବୁଝେଇଲା ପରେ ହଠାତ୍ ମନେହେଲା, ଝିଅ ମନ ପଢ଼ାରେ ନାହିଁ । ତା' ଆଡ଼କୁ ଚାହିଁ ଦେଖେ ସେ ଏକା ଆଖିରେ ମୋତେ ଅନେଇଛି । ମୁଁ ପଚାରିଲି, କିଓ, କଥା କିଣ ? ସେ ଓଲଟା ପଚାରିଲା, ସାର୍, ମୁଁ ଗ୍ଲାକ୍ସୋବେବୀ ପରି ଦିଶୁନାହିଁ ? ମୋ ମୁଣ୍ଡକୁ ରାଗ ଚଢ଼ିଗଲା । ମୁଁ କହିଲି, ବାହାରି । ଆଜିଠୁ ଏ ଘରକୁ ଆସିବାକୁ ତୁମକୁ ମନା । ମୁଁ ତୁମକୁ ବାହାରେ କ୍ଲାସ ଜାଗାରେ ଭେଟିବି । ତମେ ଯଦି ଏପରି ଅଭଦ୍ର ବ୍ୟବହାର କର, ତେବେ ତା' ବି ବନ୍ଦ । ସେ ବର୍ଷର ଶେଷ ପରୀକ୍ଷାରେ ଝିଅଟି ମୋ ହାତରେ ଶହେରୁ ବୟାଳିଶ କି ତେଇଚାଳିଶ ପାଇଲା । ବିଶ୍ୱବିଦ୍ୟାଳୟ ସାରା ସମସ୍ତଙ୍କୁ ସିଏ ନିଜେ କହିବାର ଶୁଣିଲି ନୂଆ ସାର୍ ମତେ ବାଷଠି ଦେଇଛନ୍ତି ।

ମୁଁ ତୁମକୁ ବାହାହେବାକୁ ଚାହେଁ, ମୁଠାଏ ହସ ବିଞ୍ଚିଦେଇ ଝିଅଟି କହିଲା । 'ତମେ କଣ ପାଗଳ ହେଇଚ ? ମୋ ସ୍ତ୍ରୀ ଆଉ ପୁଅଙ୍କ ଛବି ମୋ ଟେବୁଲ ଉପରେ ଥିବା ତମେ ତ ଦେଖିଚ । ତା'ଛଡ଼ା ତମ ବାପା ମା' କଣ କହିବେ ଏକଥା ଶୁଣିଲେ ?' ତା ଆରଦିନ ଝିଅର ବାପାଙ୍କର ଟେଲିଫୋନ୍ ଯୋଗେ ନିମନ୍ତ୍ରଣ । ତାଙ୍କ ଘରେ ପହଞ୍ଚିଲି । ବାପା ପଚାରିଲେ,

‘ମୋ ଝିଅ ତୁମକୁ ଭଲପାଏ ଏ କଥା ଜାଣ ?’ ମୋ ମୁହଁ ନାଲି ହୋଇଗଲା । ଗୁରୁଜନଙ୍କ ପାଖରେ ଏପରି କଥାବାର୍ତ୍ତାରେ ମୁଁ ଅଭ୍ୟସ୍ତ ନୁହେଁ । ବାପା ପଚାରିଲେ, ମୋ ଝିଅକୁ ବାହା ହେବାରେ ତମର ଆପତ୍ତି ଅଛି ? ମୋ ଝିଅ ବିଶ୍ୱବିଦ୍ୟାଳୟର ସୁନ୍ଦରୀ ରାଣୀ ରୂପେ ବଛାହୋଇଛି । ପାଠପଢ଼ା ବୁଦ୍ଧିଶୁଦ୍ଧି ତ ତମେ ଜାଣ । ଆମ ଘର ଦେଖୁଛ ? ତମେ ରାଜି ହେଲେ କାଲି ବାହାଘର ହୋଇଯିବ । ମୁଁ ଟିକିଏ ଦବିଯାଇ କହିଲି, ଆଜ୍ଞା, ମୁଁ ବାହାହେଇଛି । ମୋର ଗୋଟିଏ ପୁଅ । ବାପା କହିଲେ, ମୁଁ ଶୁଣିଛି । ତେବେ ଅସୁବିଧା କ’ଣ ? ମୁଁ ତୁମକୁ ଦଶଲକ୍ଷ ଡଲାର ଆଉ ନିଉୟର୍କରେ ମୋର କଣ୍ଢେଇ କାରଖାନା ଦେବାକୁ ସ୍ଥିର କରିଛି । ତୁମ ସ୍ତ୍ରୀ ପିଲାଙ୍କୁ ଭାରତରେ ଆରାମରେ ରଖିବା ବ୍ୟବସ୍ଥା କରି ତମେ ମୋ ଝିଅକୁ ବାହାହୁଅ । ଏତେ ସଂଖ୍ୟାର ଟଙ୍କା ଅଙ୍କ ବହିରେ ସୁଦ୍ଧା ଦେଖିଛି କି ନାହିଁ ମନେନାହିଁ । ସେଇଥିପାଇଁ ସମ୍ଭବତଃ ଏ ନିମନ୍ତ୍ରଣ ମତେ ପ୍ରଭାବିତ କଲାନାହିଁ । ମୁଁ ଯେତେବେଳେ ତାଙ୍କ ଘର ଛାଡ଼ିଲି, ସେମାନେ ଏତିକି ଅନ୍ତତଃ ନିଶ୍ଚିତ ହୋଇଥିଲେ ଯେ ଏ ଜନ୍ତୁକୁ ମନେଇବା ସହଜ କଥା ନୁହେଁ ।

ସେଦିନ ଗୋଟିଏ ଝିଅ ଦମକାଏ ଝଡ଼ ପରି ମୋ ଅଫିସ୍ ଭିତରକୁ ପଶିଆସି ରକ୍ତ ଆଖିରେ ଚାହିଁ ମତେ ପଚାରିଲା, ଆପଣଙ୍କ ମୁଣ୍ଡ କଣ ଖରାପ ହେଇଗଲାଣି ? ଆପଣଙ୍କୁ ଆଉ ଝିଅ ମିଳିଲାନାହିଁ ଯେ ଶେଷକୁ ଶକୁନ୍ତଳାକୁ ଭଲପାଇ ବସିଲେ ? ମୁଁ ହାବା ହେଇ ତାକୁ ଚାହିଁଲି । କିଛି ସମୟପରେ ସମ୍ବିତ୍ ପାଇ ପଚାରିଲି, କଥା କଣ ? ‘ଶକୁନ୍ତଳା କହୁଛି ଆପଣ ତାକୁ ଭଲପାଆନ୍ତି ।’ ମୁଁ ପଚାରିଲି, ତା’ଠୁ ବୁଝ, ମୁଁ କଣ କରିଥିବାରୁ ତା ମନକୁ ଏ କଥା ଆସିଲା ! ଝିଅଟି ପଛକୁ ବୁଲି ସେମିତି ଝଡ଼ପରି ବାହାରିଗଲା । ଦି’ଦିନ ପରର କଥା । ସେଇ ଝିଅଟି ମୁଣ୍ଡ ନୁଆଁଇ ଶାନ୍ତ ଗତିରେ ମୋ ଅଫିସ୍‌କୁ ଆସିଲା । କହିଲା ସାର୍, ମୁଁ ଅତି ଲଜ୍ଜିତ । ଶକୁନ୍ତଳାକୁ ପଚାରିବାରୁ ସିଏ କହିଲା ଯେ ଆପଣ ତା ପିଠିରେ ହାତମାରି କହିଥିଲେ ଭଗବାନ ତମର ମଙ୍ଗଳ କରନ୍ତୁ । ମୁଁ ତାକୁ ପରସ୍ତେ ଗାଳିଦେଇ ଆସିଛି । ମୁଁ ତାକୁ କହିଲି ସାର୍ ହେଉଛନ୍ତି ମୋ ବାପାଙ୍କ ଛଡ଼ା ଏକମାତ୍ର ଲୋକ ସିଏ ମୋ ମୁଣ୍ଡରେ ହାତ ବୁଲେଇ ମୋ ଦୁଃଖବେଳେ ମୋତେ ସାନ୍ତ୍ୱନା ଦିଅନ୍ତି । କ ଣ ବା କହନ୍ତି ? ବିଦ୍ୟାପତିଙ୍କ ରାଧା ‘ଆଣ୍ଟୁ ମମ ଅଙ୍ଗ ଦେଖିଲ ବ୍ରଜରାଜ’ କହି ସହି

ଆପଣା ପ୍ରେମ ପ୍ରକାଶ କରିଥିଲେ, ତେବେ ଏଇ ଅଙ୍ଗସ୍ପର୍ଶରୁ ଝିଅଟି ପ୍ରେମ କଳ୍ପନା କରିବାରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ।

କବି ବାନ୍ଧବୀ କହିଲେ, ଆପଣଙ୍କ ଜୀବନରେ ଯେ ଏତେ ଝିଅ ଅଛନ୍ତି ମୁଁ ଜାଣି ନଥିଲି । ମୁଁ ତ ସବୁ ଜାଗାରୁ ଶୁଣିଛି ଯେ ବୁଢ଼ୀମାନେ ଆପଣଙ୍କ ପ୍ରିୟ ବାନ୍ଧବୀ । ମୁଁ କହିଲି, କଉ ତମେ କବି ହେଲ ବୋଲି ତମର ଗୋଟିଏ ଲାଇସେନ୍ସ ଅଛି । ଆମେ ଲେଖକ, ଚରିତ୍ର ସୃଷ୍ଟି କରିବା ଲାଇସେନ୍ସ କଣ ଆମର ନାଇଁ ? ବାନ୍ଧବୀ ହସି କହିଲେ, ନାହିଁ । ତୁମକୁ ଏତେ ଲାଇସେନ୍ସ ମିଳିଲେ ବି ଯଦି ତମେ ସଉଦା କରି ନ ପାରିଲ, ତେବେ ଅଯୋଗ୍ୟକୁ ଲାଇସେନ୍ସ ଦେଇ ଲାଭ କ'ଣ ?

ବାନ୍ଧବୀ ଯାଇସାରିଲା ପରେ, ମୁଁ ହସିଲି । ମୁଁ କି ବୋକା ?



# ଝିଲ୍ ଅପାଙ୍କ ଗାଈ

ଯାତ ମୂହଁରେ ଝେଳ କୁକୁର । ଯୋଉଦିନ ବଙ୍କିମ ଝିଲ ଅପାଙ୍କୁ ଗାଈ ରଖିବାର ଉପକାର ବିଷୟରେ ବୁଝେଇଲା, ଆଗ ଛ'ଜଣଙ୍କୁ ନାହିଁ କରିଥିଲେ ବି ଅପା ଶେଷକୁ ମଙ୍ଗିଲେ । ବଙ୍କିମ କହିଲା, ଅପାମ, ଗାଈ ଘରକୁ ଲକ୍ଷ୍ମୀ । ଖାଲି କ୍ଷୀର ନୁହଁ; ଦହି, ଛେନା, ଘିଅ ମଧ୍ୟ ଘରେ ବସି ମିଳିବ । ଗାଈ ମୂତ, ଗୋବର ତ ଖତ । ପୁଣି ଗୋବରରେ ଘସି ପାରିଦେଲେ ଏ କାଠ ମହଙ୍ଗା କାଳକୁ କେତେ ସୁବିଧା । ବଙ୍କିମ ଆଉ କ'ଣ କହିବାକୁ ଯାଉଥିଲା । ଅପା କହିଲେ ଯେତିକି ଥାଉ । ଗାଈ ବ୍ୟବସ୍ଥା କରି ଆଣ ।

ଗାଈ ଆସିଲା । ବାଛୁରି ଲଗା । ତା'ପରେ ଆରମ୍ଭ ହେଲା ଜଞ୍ଜାଳ । ଆଜି କୁଟା ନାହିଁ ତ କାଲି ଘାସ ନାହିଁ । ପୁଣି ପିଡ଼ିଆ ନଦେଲେ ଦୁଧ କମିଯିବ । କୁଟା କାଟିବା କଇଁଚି କଣାହେଲା । ତିନି ଇଞ୍ଚ ଲମ୍ବରେ କୁଟା କଟା ହେବ । ପିଡ଼ିଆ ଓଜନ ପାଇଁ ନିକିତି କଣାହେଲା । ବିଦ୍ଧ ଅନୁମାନରେ ଓଜନ କରି ପିଡ଼ିଆ ଦେବାକୁ ହେବ । ଗରମ ଜିନିଷ ଖାଇବାକୁ ଦେବାକୁ ହେବ । ତା' ପାଇଁ ରନ୍ଧା ଦରକାର । ଗାଈକୁ ଗାଧୋଇଦେବା ଦରକାର । ପାଣି ପିଇବାକୁ ଦେବା ଦରକାର । ପ୍ରଥମ କିଛିଦିନର ଉତ୍ସାହ କଟିଗଲା ପରେ ଝିକିନିଖି କଥାକୁ ଧ୍ୟାନ ଦେବାକୁ ପଡ଼ିଲା । ଦୁଧ ଅଧିକ ହେଲେ ତାକୁ ବିକିବା ପାଇଁ ଏକ ସମସ୍ୟା । କେତେ ଆଉ ବନ୍ଧୁବାନ୍ଧବ ସାଇ-ପଡ଼ିଶାଙ୍କୁ ବାଣ୍ଟିବ ! ପୁଣି ଦୁଧକୁ ଦହି ବସେଇବା, ଛେନା ଛିଣ୍ଡେଇବା, ଘିଅ ମାରିବାରେ କିଛି କମ୍ କାମ ନାହିଁ । ଅପା ଖଟି ଖଟି ନାହିଁନ୍ତି ।

କଥାହେଲା ଗୋଟିଏ ଗଉଡ଼ ରଖାଯିବ । ଗଉଡ଼ ଦୁଧ ମାରିବା ପାଇଁ ପାଣି ମିଶେଇବା ଆରମ୍ଭ କଲା । ତେଣୁ ଦୁଧ ଦୁହିଁଲାବେଳେ ତା' ଉପରେ ଆଖି ରଖିବାକୁ ହେବ । କୁଟା କଟା ନ ହୋଇଥିଲେ କେହି ନଥିଲେ ଗଉଡ଼ ଯାହିତାହି କାମ କରି ଚଳେଇଦେଲା । ତେଣୁ ସେତେବେଳେ ମଧ୍ୟ ତାକୁ ଦେଖିବାକୁ ହେବ । ମୋଟ ଉପରେ ଗଉଡ଼କୁ ଗୋଡ଼େ ଗୋଡ଼େ ଜଗିବାକୁ ହେବ । ଅଳ୍ପ ପାଣି ମଡ଼େଇଲେ ତିନିଜଣ କମେଇ । ଯୋଉକଥା ଅପା ନିଜେ କରୁଥିଲେ ଏବେ ଅନେକ ସମୟରେ ତା' ତ କରୁଛନ୍ତି । ତା'

ଉପରେ ଗଉଡ଼କୁ ଜଗିବାକୁ ପଡ଼ୁଛି । ଅପା ଦିନେ ବିରକ୍ତ ହୋଇ ଗଉଡ଼କୁ ବିଦା କରିଦେଲେ । ତା' ବଦଳରେ ନୂଆ ଗଉଡ଼ ଆସିଲା । ପୁରୁଣା ଗଉଡ଼ ରାଗିଯାଇ ମନ୍ତ୍ର କଲା କି ଗାର ଘେରିଲା କେଜାଣି ଗାଈର ଦୁଧ ବନ୍ଦ ହୋଇଗଲା ।

ଗାଈର ଦୁଧ ବନ୍ଦହେଲା ବେଳକୁ ଘରର ଯାବତୀୟ ଅଭାବ, ଅସୁବିଧା, ବିପଦ ଆପଦ ପାଇଁ ବି ଗାଈ ହେଲା ଦୋଷୀ । ପୁଅ ଖେଳୁ ଖେଳୁ ପଡ଼ିଗଲା ତ ଗାଈର ଦୋଷ । ପରିବା କିଣୁକିଣୁ ବଜାରରେ ପଇସା ହଜିଗଲା ତ ଗାଈର ଦୋଷ । କୂଅରେ ଗରା ପଡ଼ିଗଲା ତ ଗାଈର ଦୋଷ । ନଡ଼ିଆ ଗଛକୁ ଚଡ଼ଚଡ଼ ମାରିଲା ତ ଗାଈର ଦୋଷ । ଶେଷକୁ ଯେତେବେଳେ ବାବୁଙ୍କ ଦେହ ଖରାପ ହେଲା, ସଭିଏଁ କହିଲେ ଯେ ବାବୁଙ୍କ ରାଶିରେ ଗାଈ ଯୋଗାଉ ନାହିଁ । ସେଇଥିପାଇଁ ଅଙ୍ଗପୀଡ଼ା, ଧନହାନି ।

ଶେଷକୁ କଥା ହେଲା ଗାଈକୁ କାହାକୁ ଦେଇଦେବା । ହେଲେ ଏ ଅପଯଶିଆ ଗାଈକି ନେବ କିଏ ? ସେ ପାଖ କିରାଣିଙ୍କ ଘର, ଏ ପାଖ ନାଏକଙ୍କ ଘର କେହି ଏ ଗାଈକି ନବାକୁ ଅମଙ୍ଗ । କିଏ ଜାଣିଶୁଣି କହିବ ଆ ବଳଦ ମତେ ଭିଡ଼ି ! ଦୁଧ ନାହିଁ ଅଥଚ ଖାଇବାକୁ ଦବାକୁ ହବ । ସେବାଯତ୍ନ କରିବାକୁ ହେବ । ଟିଲିଅପା ବ୍ୟସ୍ତବ୍ୟସ୍ତ । କହିଲେ କିଏ ମାଗଣା ନେଲେ ମୁଁ ଦେଇଦେବି । ମାଗଣା ନବାକୁ ବି ଲୋକ କାହାନ୍ତି ! ଶେଷକୁ ସ୍ଥିର ହେଲା ଗୋଦାନ କରାଯିବ । ଅନ୍ତତଃ ଭବିଷ୍ୟତ ପାଇଁ କିଛି ବ୍ୟବସ୍ଥା ହେବ । ଯାହା ଦେଇଥିବ ବାଟକୁ । ଗାଈ ଲାଙ୍ଗୁଡ଼ ଧରି ତପ୍ତବୈତରଣୀ ପାରହୋଇ ଯିବ । ଖୋଜାପଡ଼ିଲା ବ୍ରାହ୍ମଣ । ଯିଏ ସିଏ ବ୍ରାହ୍ମଣ ହେବନାହିଁ । ଦାନୁଆ ବ୍ରାହ୍ମଣ ଲୋଡ଼ା । ଶେଷକୁ ଯେତେବେଳେ ଦାନୁଆ ବ୍ରାହ୍ମଣ ଠାବ ହେଲା ଆଉ ତାଙ୍କଠୁଁ ବ୍ୟବସ୍ଥା ମିଳିଲା, ସେତେବେଳକୁ ଅପା ସ୍ୱସ୍ତିର ନିଃଶ୍ୱାସ ମାରିଲେ । ଚାଉଳ ପାଞ୍ଚସେର, କଞ୍ଚା ସାରୁ ଦି ବିଶା, କଞ୍ଚା କଦଳୀ ଏକ କାନ୍ଧି, କଞ୍ଚା ମୁଗଜାଇ ଦି'ମାଣ, ଆଉ ଆଉ ପରିବା ସାଙ୍ଗକୁ ଖଣ୍ଡେ ଗାମୁଛା ସଞ୍ଚା, ତମ୍ବାପାତ୍ରରେ ତିଳ ସୁବର୍ଣ୍ଣ । ଅନ୍ତତଃ ଅଧ ଭରିକର କାନକୁ ନୋଳି ହେଲପରି ସୁନା । ଲୁଗାଯୋଡ଼ ସାଙ୍ଗରେ ଗାଈ ବାଛୁରୀ ଦାନ କରି, ବିଦାକି ଦେଇ ବାହ୍ମଣଙ୍କୁ ଏକମୁହାଁ ବିଦାକଲେ । ଅପା କହିଲେ କିଣିବା ଖର୍ଚ୍ଚଠାରୁ ଦାନ କରିବା ଖର୍ଚ୍ଚ ବଳିପଡ଼ିଲା ।

ସେଇଦିନଠୁ ଗାଈ ନାଁ ଧରିଲେ ଟିଲି ଅପାଙ୍କ ମୁଣ୍ଡବିଥା ଆଉ **ରକ୍ତଚାପ ବୃଦ୍ଧି** ।

# ଜବାହରଲାଲ

ଜବାହରଲାଲ ଏପରି ଏକ ସମୟରେ ଜନ୍ମିଥିଲେ ଯେତେବେଳେ ଉତ୍ତରପ୍ରଦେଶ ପରି ପଛୁଆ ଅଞ୍ଚଳରେ ସ୍ୱଚ୍ଛନ୍ଦ ପାଠପଢ଼ୁଆ ପରିବାରର ପିଲା ସ୍ୱଦେଶୀ ରାଜନୀତିକୁ ଖୁବ୍ ବେଶି ଆସୁନଥିଲେ । ପୁଣି ବିଲାତରେ ପାଠ ପଢ଼ି ଜବାହରଲାଲ ମାର୍କସବାଦ ଓ ସମାଜବାଦ ପ୍ରତି ଆକୃଷ୍ଟ ହୋଇଥିଲେ । ଯଦିଓ ମାର୍କସବାଦ ଅତିଶୀଘ୍ର ପଶ୍ଚିମୀ ଗଣତାନ୍ତ୍ରିକ ସମାଜବାଦକୁ ଛାଡ଼ିଦେଇଥିଲା । ୧୯୩୩ରେ Whither Socialism ବୋଲି ଯେଉଁ ଲେଖା ସେ ଲେଖିଥିଲେ ତାହା ତାଙ୍କ ଚିନ୍ତାର ଆଲୋଚନା ଧାରାରେ ଏକ ପ୍ରଧାନ ଶଙ୍କୁ । ତୃତୀୟତଃ ଗାନ୍ଧି ଜବାହରଲାଲଙ୍କୁ ଆପଣାର ଉତ୍ତରାଧିକାରୀ ରୂପେ ମନୋନୀତ କରିଥିବାରୁ ସୁଭାଷ ବୋଷ, ରାମ ମନୋହର ଲୋହିଆ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜୟପ୍ରକାଶ ଆଦି ଚିନ୍ତାନାୟକ ଥିଲେ ବି ଭାରତୀୟ ରାଜନୀତିରେ ଜବାହରଲାଲ ପ୍ରମୁଖତା ଲାଭ କରିଥିଲେ ।

ଜବାହରଲାଲଙ୍କଠାରେ ଆଞ୍ଚଳିକତା ନଥିଲା । ଜାତି ଓ ଧର୍ମର ସଂକୀର୍ଣ୍ଣତାରୁ ସେ ମୁକ୍ତ ଥିଲେ । ଜେଲରେ ଥିଲାବେଳେ ସେ ଯେଉଁ ଆତ୍ମଜୀବନୀ, ପୃଥିବୀ ଇତିହାସର ଝଲକ, ଝିଅ ପାଖକୁ ବାପର ଚିଠି, ଭାରତ ଆବିଷ୍କାର ଆଦି ବହି ଲେଖିଥିଲେ, ସେଥିରୁ ତାଙ୍କର ମନର ବିସ୍ତାର ସମ୍ବନ୍ଧରେ ସମ୍ୟକ୍ ପରିଚୟ ମିଳିଥାଏ । ତେବେ ସ୍ୱାଧୀନତା ପ୍ରାପ୍ତି ପୂର୍ବର ଜବାହରଲାଲ ଓ ସ୍ୱାଧୀନତା ପର ଜବାହରଲାଲଙ୍କ ଭିତରେ ପାର୍ଥକ୍ୟ ଅଛି । ସ୍ୱାଧୀନତା ପରେ ଭାରତର ପ୍ରଧାନମନ୍ତ୍ରୀ ହେଲାପରେ ଯେତେବେଳେ ସାଧାରଣ ଲୋକ ଓ ତାଙ୍କ ମଝିରେ ବହୁ ମଧ୍ୟବର୍ତ୍ତୀଲୋକ ବାଡ଼ ପରି କାମ କରୁଥିଲେ, ଯେତେବେଳେ ଯୋଜନା ସବୁ ଅବାସ୍ତବ ହେବାକୁ ଲାଗିଲା ।

୧୯୪୬ରେ (The Discovery of India, pp 187-89) ଜବାହରଲାଲ ତାଙ୍କ ଜୀବନ ଦର୍ଶନ ବିଷୟରେ କହିବାକୁ ଯାଇ ଲେଖିଛନ୍ତି— **What was my philosophy of life ? I did not know. Some years earlier I would not have been so hesitant. There**

was a definiteness about my thinking and objectives then which has faded away since. The events of the past few years in India, China, Europe and all over the world have been confusing, upsetting and distressing, and the future has become vague and shadowy and has lost that clearness of outline which it once possessed in my mind.

ସ୍ୱାଧୀନତା ପ୍ରାପ୍ତି ସମୟକୁ ଜବାହରଲାଲଙ୍କ ମାନସିକ ସ୍ଥିତି ଏଥିରୁ ସ୍ପଷ୍ଟ ।

ଜବାହରଲାଲଙ୍କୁ ଅନେକ ଯୋଜନାବଦ୍ଧ ଅର୍ଥନୀତିର ପିତା କହୁଥିବାବେଳେ, ଆଜି କେତେକ ପଶ୍ଚିମୀ ମଡେଲର ଅନୁସରଣ ଫଳରେ ଯୋଜନାର ଅସଫଳତା ପାଇଁ ତାଙ୍କୁ ଦାୟୀ କରନ୍ତି । ଦେଶରେ ବିଜ୍ଞାନ ଓ ବୈଷୟିକ କ୍ଷେତ୍ରରେ ପ୍ରଗତି ପାଇଁ କେହି ତାଙ୍କୁ ବଧାଇ ଦେଉଥିବାବେଳେ ଆଜି କେତେକ ତାଙ୍କୁ Inappropriate Technology ପାଇଁ ଦାୟୀ କରିଥାନ୍ତି । ସମ୍ବିଧାନରେ ସବୁ ବର୍ଗର ଲୋକଙ୍କ ପାଇଁ ସମାନ ସୁଯୋଗ ଦେଇଥିବା ହେତୁ କେହି ତାଙ୍କର ଜୟଗାନ କରୁଥିବାବେଳେ ଆଜି କେହି କେହି ଶିକ୍ଷା କ୍ଷେତ୍ରରେ ଅସମାନତା ଓ ଅନୁସୂଚିତ ଜାତି ଓ ଅନୁସୂଚିତ ଟ୍ରାଇବମାନଙ୍କ ପ୍ରତି ପାତରଅନ୍ତରକୁ ଦର୍ଶାଇ ତାଙ୍କୁ ଏଥିପାଇଁ ନିନ୍ଦିତ କରିଥାନ୍ତି । ମୋଟଉପରେ ଜବାହରଲାଲଙ୍କ ବିଷୟରେ ଏପରି ବିଭିନ୍ନ ମତାମତ ପ୍ରକାଶ ପାଉଥିବାରୁ, ଏଥିରୁ ତାଙ୍କ ଚରିତ୍ରର ଦୁଇ ବିପରୀତମୁଖୀ ବିଚାରଧାରାର ସମ୍ୟକ୍ ପରିଚୟ ମିଳେ । ଗୋଟିଏ ହେଉଛି ତାଙ୍କର ଆଦର୍ଶବାଦ ଓ ଭାବପ୍ରଧାନ ଆଭିମୁଖ୍ୟ, ଅନ୍ୟ ଗୋଟିଏ ହେଉଛି ତାଙ୍କର ଆଦର୍ଶବାଦକୁ ବାସ୍ତବରେ ପରିଣତ କରିବାରେ ଅସଫଳତା ।

ଜବାହରଲାଲ ମୋତିଲାଲଙ୍କ ପୁଅ, ଗାନ୍ଧିଙ୍କ ଦାୟାଦ ଓ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଭାବରେ ଲୋକଙ୍କଠାରୁ ଏତେ ସ୍ନେହ ଓ ବିଶ୍ୱାସ ପାଇଥିଲେ ଯେ ରାଷ୍ଟ୍ରର ଅଧିକାଂଶ କ୍ଷମତା ତାଙ୍କଠାରେ କେନ୍ଦ୍ରିତ ହୋଇଗଲା । ସେତେବେଳେ ସେ ଯାହା ଚାହୁଁଥିଲେ ତା' କରିପାରିଥାନ୍ତେ, କିନ୍ତୁ ତାଙ୍କର ନିଜସ୍ୱ ଆଦର୍ଶକୁ ଭୂଇଁକୁ ଓହ୍ଲାଇବାରେ ଅପାରଗତା ଓ

ତାଙ୍କ ଗୃହପାଖରେ ବିଶ୍ୱାସରେ ବିଷ ଦେଇଥିଲା ଗୃହକାରଙ୍କ ବାହାରୁଥିବା ଯୋଜନା ସବୁ ଆମ ଭୂଇଁରେ ଗଜୁରେଇଲା ନାହିଁ । ଏହାହିଁ ଆମର ଦୁର୍ଭାଗ୍ୟ ।

ଜବାହରଲାଲଙ୍କ ପିଲାସ୍ନେହ ଏତେ ଅଧିକ ଥିଲା ଯେ ତାଙ୍କ ଜନ୍ମ ଦିବସକୁ ଆମେ ଶିଶୁଦିବସ ରୂପେ ପାଳୁଛୁ । ଏଇ ପିଲାମାନଙ୍କର ବର୍ତ୍ତମାନ ଓ ଭବିଷ୍ୟତ କଥା ଭାବିଲାବେଳେ ଆମେ ଜବାହରଙ୍କର ସଫଳତା କିମ୍ବା ବିଫଳତା ବିଷୟରେ ସହଜେ ଜାଣିପାରିବା । ଆଜି ଭାରତରେ ୫ ବର୍ଷରୁ କମ୍ ଶତକଡ଼ା ।୫ ଭାଗ ପିଲା ପୁଷ୍ଟିକର ଖାଦ୍ୟ ଅଭାବରୁ ସଢ଼ୁଛନ୍ତି । ମାତ୍ର ଶତକଡ଼ା ୧୫ କୌଣସିମତେ ଯଥେଷ୍ଟ ପୁଷ୍ଟିକର ଖାଦ୍ୟ ପାଉଛନ୍ତି । ଭାରତରେ ପ୍ରାୟ ଅଢ଼େଇ ଲକ୍ଷ ଅନ୍ଧ, ଅଢ଼େଇଲକ୍ଷ କାଲା, ୫ ଲକ୍ଷ ଅନ୍ୟାନ୍ୟ ଶାରୀରିକ ବିକଲାଙ୍ଗ ଓ କୋଡ଼ିଏ ତିରିଶ ଲକ୍ଷ ମାନସିକ ବିକଳାଙ୍ଗଗ୍ରସ୍ତ ପିଲା ଅଛନ୍ତି । ଭାରତ ପୃଥିବୀରେ ସବୁଠାରୁ ଅଧିକ ପିଲା-ଶ୍ରମିକ ନିଯୋଗ କରୁଥିବା ଦେଶ । ଏସିଆନ୍ ଲେବର ଫ୍ରଣ୍ଟ୍‌ର ଅଟକଳ ଅନୁସାରେ ଭାରତରେ ପ୍ରତି ତିନି ଘରରୁ ଗୋଟିକରେ ଗୋଟିଏ ଶିଶୁଶ୍ରମିକମାନଙ୍କର ଅବଦାନ ।

ଏଇ ପିଲାମାନଙ୍କର ପାଠପଢ଼ା କଥା ଦେଖିଲେ ଅଧିକ ହତାଶ ହେବାକୁ ହୁଏ । ଆମ ଦେଶରେ ଶିକ୍ଷାବିତ୍‌ମାନେ ସ୍କୁଲରେ ଭର୍ତ୍ତିହେବା ସଂଖ୍ୟା ଉପରେ ଅଧିକ ଜୋର୍ ଦେଇଥାନ୍ତି । ସ୍କୁଲରେ କେତେ ରହିଲେ ଓ ସ୍କୁଲରୁ କେତେ ବାହାରିଲେ ଏହାର ପରିସଂଖ୍ୟା ବିଷୟରେ କାହାରି ଆଗ୍ରହ ନାହିଁ । ୧୯୮୦-୮୫ ଭିତରେ ୬ରୁ ୧୪ ବର୍ଷ ଯାଏ ଥିବା ପିଲାଙ୍କ ସଂଖ୍ୟା ଥିଲା ୧୪୦ ମିଲିଅନ । ସେମାନଙ୍କ ମଧ୍ୟରୁ ମାତ୍ର ୧୧୦ ମିଲିଅନ୍ ଉଭୟ ଔପଚାରିକ ଓ ଅନୌପଚାରିକ ସ୍କୁଲମାନଙ୍କରେ ଭର୍ତ୍ତି ହୋଇଛନ୍ତି । ଯେଉଁମାନେ ଭର୍ତ୍ତି ନହେଲେ ସେମାନଙ୍କ ଭିତରୁ ଅଧିକାଂଶ ଝିଅ ଓ ସମାଜର ତଳବର୍ଗର ଲୋକମାନଙ୍କର ପିଲା । ଯେଉଁମାନେ ଭର୍ତ୍ତିହେଲେ ୧୯୮୦ ଅଟକଳ ଅନୁସାରେ ପ୍ରାଇମେରୀରେ ଶତକଡ଼ା ୬୩.୧, ମିଡ଼ିଲ ସ୍କୁଲରେ ଶତକଡ଼ା ୭୭.୧ ବାଟ କଡ଼ରେ ପଢ଼ାଛାଡ଼ନ୍ତି । ଏଇଥିରୁ ସ୍ପଷ୍ଟ ନେହେରୁଙ୍କ ଭାରତୀୟ ପିଲାଙ୍କ ପ୍ରତି ଏକାନ୍ତ ସ୍ନେହ ସତ୍ତ୍ୱେ ସେ କିପରି ପ୍ରତାରିତ ହୋଇଛନ୍ତି ସହଜେ

ଧରିବେବ ।

ଭାରତୀୟ ଭାଷା ମାଧ୍ୟମରେ ଶିକ୍ଷା ସେହିପରି ଆଉ ଏକ ବିଷୟ ଯାହା ସାକ୍ଷରତା ଓ ଟିଲ୍ଲାଙ୍କର ପ୍ରାଥମିକ ଶିକ୍ଷା ସହିତ ଘନିଷ୍ଠ ଭାବରେ ସଂପୃକ୍ତ । ୧୯୪୫ରେ ଭାରତୀୟ ପି. ଇ. ଏନ୍.ରେ ବକ୍ତୃତା ଦେଇ ଜବାହରଲାଲ କହିଛନ୍ତି--

"Languages, by themselves, I am convinced, are not a destructive factor; not at all a factor leading to disunity, partly because the languages are akin to each other and the growth of one helps to build up the others, and any how they are not going to hinder each others growth"

ଏହା ସତ୍ତ୍ୱେ ଏବଂ ସମ୍ବିଧାନରେ ପ୍ରାଥମିକ ଶିକ୍ଷା ମାତୃଭାଷା ମାଧ୍ୟମରେ ହୋଇଯିବ ବୋଲି ବ୍ୟବସ୍ଥା ଥିଲେ ସୁଦ୍ଧା ଏ ଦିଗରେ କୌଣସି କାର୍ଯ୍ୟ ସେ କରିନଥିଲେ । କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲି କମ୍ବା ପାର୍ଲାମେଣ୍ଟରେ ଭାରତୀୟ ଭାଷା ପ୍ରଶ୍ନ ଆଦୌ ବିଚାର କରାଯାଇ ନଥିଲା । ହିନ୍ଦୀ ଓ ଇଂରାଜୀ ମଧ୍ୟରୁ କେଉଁଟି ଭାରତୀୟ ଗଣତନ୍ତ୍ରର ସମ୍ମାନନୀୟ ଭାଷା ହେବ ଏଇଥିପାଇଁ ଝଗଡ଼ା ଲାଗି ରହିଥିଲା । ଜବାହରଲାଲ କେବଳ ଯେ ଇଂରାଜୀ ସପକ୍ଷରେ ତାଙ୍କର ରାୟ ଦେଇଥିଲେ ନୁହେଁ, କୋଟି କୋଟି ଭାରତୀୟ ଚିଲାଙ୍କ ମୁହଁରୁ ଆପଣା ଆପଣା ଭାଷା ଛଡ଼ାଇ ନେବା ପାଇଁ ମଧ୍ୟ ସେ ଦାୟୀ ।

ଜବାହରଲାଲଙ୍କର ପ୍ରଜ୍ଞା ଉଧାର କରା ପ୍ରଜ୍ଞା । ପଶ୍ଚିମର ବିଶିଷ୍ଟ ଦାର୍ଶନିକ ସାର୍.ପି.ଏଫ୍. ଷ୍ଟ୍ରସନ୍ କହିଛନ୍ତି, ଯେ କୌଣସି ଦାର୍ଶନିକ ତାଙ୍କର ପୂର୍ବ-ସୂରୀମାନଙ୍କ ମତକୁ ଆପଣା ସମସାମୟିକ ପରିପ୍ରେକ୍ଷୀରେ ନୂଆକରି ଚିନ୍ତା ନକଲେ, ସେମାନଙ୍କୁ ବୁଝିବା ଅସମ୍ଭବ । ଜବାହରଲାଲ ଭାରତୀୟ ଦର୍ଶନର ଧାରାକୁ ସମସାମୟିକ ଦୃଷ୍ଟିରେ ବିଚାର କରିନାହାନ୍ତି । ବରଂ ପଶ୍ଚିମ ବିଚାରଧାରାକୁ ସମସାମୟିକ ଦୃଷ୍ଟିରେ ଦେଖିବାକୁ ଚେଷ୍ଟା କରିଛନ୍ତି । ଏକ ରୋମାଣ୍ଟିକ୍ ଚେତନା ଭାରତର ଅତୀତ ସହ ତାଙ୍କୁ ଯୁକ୍ତ କରିଥିଲା । ଯେଉଁ ବୁଦ୍ଧିଦୀପ୍ତ ଚେତନା ଦ୍ୱାରା ପ୍ରେରିତ ହୋଇ ଭାରତର ଅତୀତକୁ ସମସାମୟିକ

ପଦ୍ଧତିରେ ବିଶ୍ଳେଷଣ କରିବା କଥା, ସେ ଦୃଷ୍ଟି ତାଙ୍କର ନଥିଲା । ଫଳରେ ଭାରତର ଆବିଷ୍କାର ତାଙ୍କ ପାଇଁ କଲମ୍ବସଙ୍କ ଭାରତ ଆବିଷ୍କାର ପରି ଥିଲା ।

ଜ୍ଞାନର ସ୍ରୋତ, ବିଶେଷକରି ବିଜ୍ଞାନର ଆଧିପତ୍ୟ ଆଉ ପ୍ରଥମ ମହାଯୁଦ୍ଧ ପଶ୍ଚିମ ଚିନ୍ତାରାଜ୍ୟରେ ଏକ ଅଭୂତପୂର୍ବ ପରିବର୍ତ୍ତନ ଆଣିଲା । ଅସ୍ତିତ୍ୱବାଦ (Existentialism) ଆଉ ତର୍କସମ୍ମତ ଅନୁଭୂତିବାଦ (Logical positivism) ଏହି ସମୟର ପଶ୍ଚିମୀ ଚିନ୍ତାଧାରାର ଦୁଇ ପ୍ରମୁଖ ଧାରା । ପ୍ରଥମଟିରେ ମଣିଷର ଅସ୍ତିତ୍ୱ ତା'ର ମୂଲ୍ୟବୋଧ ଅପେକ୍ଷା ପ୍ରାଧାନ୍ୟ ଲାଭ କଲା । ଦ୍ୱିତୀୟଟିରେ ମୂଲ୍ୟ ଓ ମତକୁ ନିରର୍ଥକ ରୂପେ ଗଣାଗଲା । ସମାଜ ଓ ପୃଥିବୀର ଭବିଷ୍ୟତ ସମ୍ପର୍କରେ କୌଣସି କାଳ୍ପନିକ ବିଚାରକୁ ଅସିଦ୍ଧ ବିଚାର କରାଗଲା । ଏଥିରେ ମଣିଷଠାରେ ଅମୃତତ୍ୱର ପରିକଳ୍ପନା ତ ରହିଲା ନାହିଁ, ମଣିଷ ଚରିତ୍ରର କୌଣସି ସାଧାରଣ ଗୁଣ ବା ବିଶିଷ୍ଟତାକୁ ଧରି ତା'ର ବିଚାର କରିବା ସମ୍ଭବ ମଧ୍ୟ ହେଲାନାହିଁ । ଏହିପରି ପରିସ୍ଥିତିରେ ଧର୍ମର ବାନ୍ଧିରଖିବା ଗୁଣକୁ ଛାଡ଼ି ତା'ର ସଂକୀର୍ଣ୍ଣ ଓ ଔପଚାରିକ ବିଚାରରେ ତାକୁ ପରିତ୍ୟାଗ କରିବା ଶ୍ରେୟ ମନେକରାଗଲା । ଏହିପରି ଦୋଛକିରେ ପଡ଼ି ଜବାହରଲାଲ ବିଜ୍ଞାନର ପ୍ରଭୁତ୍ୱ ସ୍ୱୀକାର କରିବା ସଙ୍ଗେସଙ୍ଗେ ଏକ ଅସ୍ପଷ୍ଟ ମାନବବାଦ ସପକ୍ଷରେ ଯୁକ୍ତି ବାଢ଼ିଥିଲେ । ବିଜ୍ଞାନର ଶକ୍ତିରେ ବଳୀୟାନ ଓ ଏକ ସ୍ୱତନ୍ତ୍ର ଆତ୍ମବିଶ୍ୱାସପୁଷ୍ଟ ମଣିଷ ଯେ ମାନବବାଦର ପରିପନ୍ଥୀ ଏକଥା ସେ ବୁଝି ମଧ୍ୟ ବୁଝିନଥିଲେ । ଧର୍ମ ଓ ଆଧିଭୌତିକ ଦର୍ଶନକୁ ସଙ୍କୀର୍ଣ୍ଣ ଓ ଧର୍ମସାମର୍ଥ୍ୟକ ବାସ୍ତବତାର ବିରୋଧୀ କହି ଅଗ୍ରାହ୍ୟ କରିଯାରିଲା ପରେ ବିଜ୍ଞାନର ଶରଣ ନେବା ବ୍ୟତୀତ ତାଙ୍କର ଅନ୍ୟ ପନ୍ଥା ନଥିଲା ।

ଜବାହରଲାଲ ମାର୍କ୍ସବାଦ ଓ ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ ଏଗୁଡ଼ିକୁ ସଂପୂର୍ଣ୍ଣରୂପେ ଗ୍ରହଣ କରିପାରି ନ ଲେ । ୧୯୩୩ରେ ସମାଜବାଦର ଗତି କୁଆଡ଼େ (Whither socialism) ଲେଖିଲାବେଳକୁ ସେ ମାର୍କ୍ସବାଦ ବିଷୟରେ ସନ୍ଦେହ ପ୍ରକଟ କରିବାକୁ ଆରମ୍ଭ କରିସାରିଲେଣି । ଏଣେ ତାଙ୍କର ମାର୍କ୍ସବାଦୀ ଓ ବିଜ୍ଞାନବାଦୀ ମନ ବୌଦ୍ଧ ଧର୍ମକୁ ପୂର୍ଣ୍ଣରୂପେ ଗ୍ରହଣ କରିବାକୁ ଅମଙ୍ଗ ।

ଜବାହରଲାଲଙ୍କର ବୈଦିକ ସାହିତ୍ୟ ସହିତ ପରିଚୟ ନଥିଲା କହିଲେ ଚଳେ । ଥିଲେ ସେ ବୈଦିକ ଧର୍ମ ଯେ ଅଜ୍ଞାନ୍ତ୍ୟବାଦ ନୁହେଁ, ଆଧ୍ୟାତ୍ମିକ-

ବାଦ ନୁହେଁ କିମ୍ବା ଭୌତିକବାଦ ମଧ୍ୟ ନୁହେଁ ଏବଂ ଏଥିରେ ଈଶ୍ୱରତତ୍ତ୍ୱ କିମ୍ବା ସୃଷ୍ଟିତତ୍ତ୍ୱର ବିଚାର କରାଯାଇ ନାହିଁ—ଏ କଥା ସେ ବୁଝିଥାଆନ୍ତି । ବେଦର ବୈଜ୍ଞାନିକ ମାନବବାଦକୁ ସମସାମୟିକ ମାନବବାଦ ସହିତ କିପରି ଖାପ ଖୁଆଯାଇପାରିବ ସେଥିପାଇଁ ସେ ଚେଷ୍ଟା କରିଥାଆନ୍ତି । ଜବାହରଲାଲଙ୍କର ଉପନିଷଦ ସହିତ ପରିଚୟ ଥିଲା । କିନ୍ତୁ ବେଦ ସହିତ ଅଙ୍ଗଲଗ୍ନ ଏହି ଉପନିଷଦଜ୍ଞାନ ତାଙ୍କୁ ଭାରତୀୟ ଚିନ୍ତନ ମନନର ମୂଳତତ୍ତ୍ୱ ବୁଝିବାରେ ସାହାଯ୍ୟ କରିନଥିଲା ।

ଆଜି ଶତାବ୍ଦୀର ଶେଷ ପାହାଚରେ ଆମେ ଯେତେବେଳେ ଜବାହରଲାଲଙ୍କୁ ବିଚାର କରୁଛୁ, ସେତେବେଳେ କେବଳ ତୋଷାମଦ ଓ ପ୍ରଶଂସା କଲେ ଆମେ ଯେ ଇତିହାସ ପାଖରେ ନିନ୍ଦିତ ହେବୁ ନୁହେଁ, ଜବାହରଲାଲଙ୍କୁ ମଧ୍ୟ ଲୋକ ଆଖିରେ ଆଉ ତାଙ୍କ ନିଜ ଆଖିରେ ସାନ କରିଦେବୁ । ଜବାହରଲାଲ ଏକ ସମାଜବାଦୀ ଗଣତାନ୍ତ୍ରିକ ରାଷ୍ଟ୍ର ଗଢ଼ିବାର ସ୍ୱପ୍ନ ଦେଖୁଥିଲେ । ଆଜି ମୁଣ୍ଡଗଣତି ସଂଖ୍ୟାରେ ଏକନାୟକତ୍ୱ ତଳେ ଗଣତନ୍ତ୍ର ପେଶିହୋଇ ଯାଉଥିବାବେଳେ ଆଉ ଅସମାନତାର ସ୍ୱେଚ୍ଛାଚାର ତଳେ ସମାନତାର ସ୍ୱପ୍ନ ବୁଡ଼ିଯାଉଥିବାବେଳେ ଜବାହରଲାଲଙ୍କ ସଫଳତା ସାଙ୍ଗେ ସାଙ୍ଗେ ବିଫଳତାକୁ ନଦେଖିଲେ ଇତିହାସର ବିଚାରରେ ଆମେ ଅଥର୍ବ ବୋଲି ଗଣାହେବୁ ।



# ମହାତ୍ମା ଗାନ୍ଧି ଅମର ରହେ

ପିଲାଦିନେ ମହାତ୍ମା ଗାନ୍ଧି ଅମର ରହେ ଧ୍ୱନି ହେଉଥିଲାବେଳେ ଆମେ ବୁଝୁଥିଲୁ ଯେ ମହାତ୍ମା ଗାନ୍ଧି ସତ୍ୟ, ଅହିଂସା, ନିର୍ଭିକତା, ସ୍ୱରାଜ ଆଦି ଯେଉଁ କଥା କହୁଥିଲେ, ତା ପଛରେ ଥିବା ମୂଲ୍ୟବୋଧ ଆମର ରହୁ । ମହାତ୍ମା ଗାନ୍ଧି ସତକୁ ସତ ଯେ ଆମ ମଝିରେ ଅମରହୋଇ ରହିବେ ଏକଥା କାହାରି ମନରେ ନଥିଲା । ବଡ଼ ବେଶି ହେଲେ ସେ ଆମ ପାଖରେ ଦରହିଲେ ମଧ୍ୟ ହନୁମାନ, ଅଶ୍ୱତ୍ଥାମାଙ୍କ ପରି ଅମର ହୋଇ ରହନ୍ତୁ । ତାଙ୍କ ନାଁ, ତାଙ୍କ ଶିକ୍ଷା ଏଇ ସବୁ ଅମର ରହୁ ।

ଯେତେବେଳେ ଇନ୍ଦିରା ଗାନ୍ଧି ଅମର ରହେ, ସଞ୍ଜୟ ଗାନ୍ଧି ଅମର ରହେ ପରି ଧ୍ୱନି ଶୁଣିବାକୁ ମିଳିଲା ସେତେବେଳେ ଚିନ୍ତା ହେବା ସ୍ୱାଭାବିକ । ଆମେ କଥାଗୁଡ଼ାକ କେଡ଼େ ହୁଗୁଳା କରି ବ୍ୟବହାର କରୁଛୁ । ଧରାଯାଉ, ଇନ୍ଦିରା ଗାନ୍ଧିଙ୍କର ଏପରି କିଛି ଗୁଣ ରହିଛି ଯାହା ଅମର ରହିଲେ ଆମର ଗର୍ବବୋଧ କରିବା କାରଣ ରହିବ । କିନ୍ତୁ ସଞ୍ଜୟ ଗାନ୍ଧିଙ୍କର କି ଗୁଣ ଅମର ରହିବ ?

ଜଣେ ବନ୍ଧୁ ଥଟ୍ଟାକରି କହିଲେ ଆମ ଦେଶରେ ମଲେ ଯାଇ କେହି ଅମର ହେବେ । ବଞ୍ଚିଥିବା ଲୋକଙ୍କୁ ପଚାରିବାକୁ କେହି ନାହିଁ । ସେଇଥିପାଇଁ ଚର୍ଚ୍ଚା ଭାଗବତରେ କୁହାଯାଇଛି, 'ଜୀବର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।' ବଞ୍ଚିବା ଲୋକର ସବୁ ଗୁଣ ଅବଗୁଣ । ମରିବା ଲୋକର ସବୁ ଅବଗୁଣ ଗୁଣ । କଥାରେ ଅଛି ଯଶ ମହତ ଲୋକର ଖାଦ୍ୟ । ତେଣୁ ଯେଉଁ ଯଶ ମଣିଷକୁ ଅମର କରେ ତାହା ମଲା ଲୋକଙ୍କର ଗୁଣ ।

ଅମର ହେବାର ଇଚ୍ଛା ଲୋକଙ୍କର ଏତେ ପ୍ରବଳ ଯେ ଏଥିପାଇଁ କୃଚ୍ଛ୍ର ସାଧନର ବହୁ ଉଦାହରଣ ଆମ ପୁରାଣମାନଙ୍କରେ ଅଛି । ଦେବତାଙ୍କୁ ତାଙ୍କ ମରଣକୁ ଫାଙ୍କି ଦେବାର ଚେଷ୍ଟାର କମ୍ ଉଦାହରଣ ଆମ ପୁରାଣ କଥାରେ ନାହିଁ । ହିରଣ୍ୟକଶିପୁ ଘରେ ମରିବ ନାହିଁ କିମ୍ବା ବାହାରେ ମରିବ ନାହିଁ, ମଣିଷ ହାତରେ ମରିବ ନାହିଁ କି ଜନ୍ତୁ ହାତରେ ମରିବ ନାହିଁ, ଦିନରେ ମରିବ ନାହିଁ କି ରାତିରେ ମରିବ ନାହିଁ ଇତ୍ୟାଦି ବର ପାଇ ନିଶ୍ଚିନ୍ତ ମନରେ ଅମର

ରହିବାର ସ୍ୱପ୍ନ ଦେଖୁଥିଲା । ସିଏ ବି ମଲା । ଧର୍ମବକ ଯୁଧିଷ୍ଠିର ସମ୍ବାଦରେ କମାଶ୍ଚର୍ଯ୍ୟମ୍ ? ପ୍ରଶ୍ନର ଉତ୍ତରରେ ଯୁଧିଷ୍ଠିର କହିଥିଲେ, ପ୍ରତିଦିନ ଆମ ଆଖିଆଗରେ ଶହ ଶହ ଲୋକ ମରୁଛନ୍ତି । ବାକି ଯିଏ ରହିଲେ ସେମାନେ ଅମରତ୍ୱ ଇଚ୍ଛା କରନ୍ତି । ଏହାଠୁ ଆଶ୍ଚର୍ଯ୍ୟ ଆଉ କ'ଣ ଅଛି ?

ଅମର ହେବାର କେତେ ଫନ୍ଦଫିକର ବାହାରିଲାଣି । ମଲାପରେ ଜନ୍ମଦିନ ମନେଇବା ତା' ଭିତରୁ ଗୋଟିଏ । କାହାର ତେସ୍ତରିବେ ବର୍ଷ ପାଳନ ହେଉଛି ତ କାହାର ଶହେ ଅଣଚାଳିଶ ବର୍ଷ । ବଞ୍ଚି ଥାଉ ଥାଉ ଆପଣାର ପ୍ରତିମୂର୍ତ୍ତି କିମ୍ବା ଛବି ତିଆରି କରି ସାଧାରଣ ଜାଗାରେ ବସେଇ ପାରିଲେ ଅମରତ୍ୱର ଆନନ୍ଦ । ସେ ମୂର୍ତ୍ତି ମୁଣ୍ଡରେ କାଉ କି ପାରି ହଗନ୍ତୁ କି ଛବିରେ ଅଳନ୍ଧୁ ଲାଗୁ । ରାସ୍ତା ନୋହିଲେ ବି ଗଳିର ନାଆଁ ଆପଣା ନାଆଁରେ ହେଲେ ସେଇ ମଣିଷ ଅମର । ସେଇ ଅମରତ୍ୱର ସ୍ୱରୂପ ଦେଖନ୍ତୁ । ବହୁତ ଦିନଯାଏ 'ବିବାଦୀବାଗ୍' କହିଲେ କଲିକତାର କୋଉ ଜାଗା ମୁଁ ଜାଣିନଥିଲି । ଯୋଉ ବସ୍‌ରେ ଏଇ ନାଆଁ ଲେଖାଯାଇଛି ତା' କୋଉ ଜାଗା ପଚାରିବାରେ ଉତ୍ତର ମିଳିଲା ଲାଲଦିଘି । ବହୁତ ଖୋଳତାଡ଼ ପରେ ଜଣାଗଲା ଯେ ବିନୟ, ବାଦଲ, ଦିନେଶ ଏ ତିନିଜଣ ଶହୀଦଙ୍କୁ ଅମର କରିବାକୁ ଏହି ନାମ ରଖାଯାଇଛି । କିଏବା ଏତେ ଗବେଷଣା କରୁଛି ! ତେଣୁ ସାଧାରଣ ଧାରଣାରେ ଏହା ଏକ ବିବଦମାନ ଜାଗା । ତା'ପରେ ଷଷ୍ଟିପୂର୍ତ୍ତି ଓ ପର ଦଶନ୍ଧିମାନଙ୍କରେ ସ୍ମାରକୀ ଗ୍ରନ୍ଥ ବାହାର କରିବା ଆଉ ଗୋଟିଏ ବାଟ । କୌଣସି କ୍ଷମତାଶାଳୀ ଲୋକଙ୍କୁ ଦେଇ ଏହି ଗ୍ରନ୍ଥକୁ ଉନ୍ମୋଚନ ହୋଇପାରିଲେ ତ କଥା ନାହିଁ । ଡାକ ଟିକଟ ବାହାରିପାରିଲେ କିମ୍ବା ପ୍ରଥମ ଦିନର ଲଫାପା ବାହାର କଲେ ଅମରତ୍ୱ ପାଇଁ ଆଉ ଏକ ପଦକ୍ଷେପ । ଲୋକ ଅଧିକ ଲୋକପ୍ରିୟ ହେଲେ ତାଙ୍କ ନାଁରେ କୁକୁର ପାଳି ତାଙ୍କୁ ଅମର କରାଯାଉଛି । ଯୋଡ଼ାଏ କୁକୁରଙ୍କ ନାଆଁ ଷ୍ଟାଲିନ ଓ ରୁଜଭେଲ୍‌ଟ ଥିବା କଥା ମୁଁ ଶୁଣିଛି । ଗାନ୍ଧି ବଡ଼ି, ଜବାହର ସାବୁନ, ଲାଲବାହାଦୁର ତମାଖୁ ପରି ଜିନିଷମାନ ତ ଅଛି; କିନ୍ତୁ କଥା ହେଉଛି ଯେ ମଣିଷ ଆପଣାକୁ ଓ ପରକୁ ଅମର କରିବାକୁ ଯେତେ ଯେତେ ନୂଆବାଟ ବାହାର କରୁଛି, ମଣିଷର ଭୁଲାମନ ସେ ସବୁକୁ ଇତିହାସ ରାସ୍ତାକଡ଼ର ଅଳିଆ ଗଦାରେ ପୋଡାଡ଼ ଦେଇଯାଉଛି ।

# ଭାରତ ପଦ୍ମର ପାଖୁଡ଼ା–ତିବ୍ବତ

ଏବର୍ଷ ଆନ୍ତର୍ଜାତିକ ତିବ୍ବତ ବର୍ଷ-୧୯୯୧ । ତିବ୍ବତକୁ ଚୀନର ଅଂଶ ମାନି ଭାରତ ଆପଣା ଆତ୍ମଗୌରବର ଯେଉଁ ହାନି ଘଟେଇଥିଲା ଅନ୍ତତଃ ସେହି ଆତ୍ମଗ୍ଳାନିରୁ ବଞ୍ଚିବା ପାଇଁ ଆଜି ତିବ୍ବତ କଥା ମନେ ପକାଇବା ଦରକାର । ପଞ୍ଚଶୀଳ ମିତ୍ରତା ପଛରୁ ଚୀନର ଭାରତ ଆକ୍ରମଣ ଓ ତିବ୍ବତ ଅଧିକାର ଭାରତୀୟ ବନ୍ଧୁତାକୁ ଧୋକା । ଜବାହରଲାଲ ଏଇ ଧୋକାର ଶିକାର ହୋଇଥିଲେ । ମରିବାର ଦୁଇ ଦିନ ଆଗରୁ ଗୋପାଳ ସିଂହଙ୍କୁ ଲେଖିଥିବା ଚିଠିରେ ସେ ଆପଣା ଭୁଲ ମାନିଥିଲେ । ଏଇ ଭୁଲମାନିବାରେ ତାଙ୍କର ଦୋଷ ଧୋଇହୋଇଯାଇଥିଲେ ସୁଦ୍ଧା ରାଜନୀତିରେ ହୁଡ଼ିବାର ପରିଣାମ କେତେ ପୁରୁଷ ଭୋଗିବେ କିଏ କହିପାରିବେ ?

ଚୀନର ତିବ୍ବତ ଅଧିକାର ପରେ ବାର ଲକ୍ଷ କୋଡ଼ିଏ ହଜାର ଲୋକ ମଲେଣି । ଛ' ହଜାରରୁ ଅଧିକ ମଠକୁ ଧୂଳିସାତ୍ କରାଗଲାଣି । ହଜାର ହଜାର ତିବ୍ବତ ଲୋକ ଜେଲରେ ସଡ଼ୁଛନ୍ତି । ସବୁଠାରୁ ବଡ଼କଥା ହେଲା ଯେ ତିବ୍ବତୀୟଙ୍କୁ ଆପଣା ଘରେ ଅଲ୍ପମତ କରେଇବା ପାଇଁ ବହୁ ଚୀନ ଲୋକଙ୍କୁ ତିବ୍ବତରେ ବସବାସ କରାଯାଉଛି । ୬୦ ଲକ୍ଷ ତିବ୍ବତ ଲୋକ ଥିବା ରାଜ୍ୟରେ ୭୫ ଲକ୍ଷ ଚୀନ ଅଧିବାସୀଙ୍କୁ ରଖାଗଲାଣି । ୧୯୫୯ରେ ଦଲାଇଲାମା ବାଧ୍ୟ ହୋଇ ତିବ୍ବତ ଛାଡ଼ି ଭାରତରେ ଶରଣ ନେଲେ । ସେଇଦିନୁ ତିବ୍ବତ ସ୍ୱାଧୀନତାର ସ୍ୱପ୍ନକୁ ସିଏ ବଞ୍ଚେଇ ରଖିଛନ୍ତି ।

ଏଇ ତିବ୍ବତ ହେଉଛି ବହୁ ସଂସ୍କୃତିବନ୍ତ ଭାରତ ପଦ୍ମର ଗୋଟିଏ ପାଖୁଡ଼ା । ୭ମ ଶତାବ୍ଦୀରୁ ବୌଦ୍ଧଧର୍ମ ତିବ୍ବତକୁ ଗଲାଦିନୁ ତିବ୍ବତ ଭାରତୀୟ ସଂସ୍କୃତିର ଅଙ୍ଗ ହୋଇ ବି ଆପଣା ସ୍ୱତନ୍ତ୍ର ମହତ୍ତ୍ୱରେ ବିକଶିତ ହେଲା । ଭାରତରେ କେରଳୀ, ଗୁଜୁରାଟୀ, କାଶ୍ମୀରୀ, ଆସାମୀ ଯେମିତି ଭାରତୀୟ ସଂସ୍କୃତିର ଗୋଟିଏ ଗୋଟିଏ ପାଖୁଡ଼ା, ତିବ୍ବତୀ ମଧ୍ୟ ସେଇମିତି । କୋଉ-କାଳରେ ଓଡ଼ିଶାର ବୌଦ୍ଧଭିକ୍ଷୁ ତିବ୍ବତକୁ ଆପଣା ଲିପି ଦେଇ ଯାଇଥିଲେ ସେଇଥିରୁ ତିବ୍ବତୀଲିପିର ଜନ୍ମ । ହିମାଳୟର ଚେରମୂଳ ଗଛ-ଗାଛଡ଼ା

ଉପରେ ଆଧାରିତ ତିବ୍‌ବତୀ-ଔଷଧ ବ୍ୟବସ୍ଥା ଭାରତୀୟ ଆୟୁର୍ବେଦ ଶାସ୍ତ୍ରର ବିସ୍ତାର । ବୌଦ୍ଧ ଧର୍ମ ଓ ଦର୍ଶନ ତିବ୍‌ବତୀ ଜୀବନ ଓ ଚିନ୍ତନକୁ ଏପରି ପ୍ରଭାବିତ କରିଛି, ତା' ପୂର୍ବରୁ ଯେ ତିବ୍‌ବତୀ ସଂସ୍କୃତି ଥିଲା ଏ କଥା ଅନେକେ ଭୁଲିଗଲେଣି ।

ପ୍ରକୃତ ପକ୍ଷେ ବନ ଧର୍ମ ହେଉଛି ତିବ୍‌ବତର ଆଦିମ ସଂସ୍କୃତି । କେତେକଙ୍କ ମତରେ ତିବ୍‌ବତର ଅସ୍ମିତା ଏହି ବନ ଧର୍ମରେ ହିଁ ଖୋଜିବାକୁ ହେବ, କିନ୍ତୁ ବନ ଓ ବୌଦ୍ଧ ଧର୍ମକୁ ପରସ୍ପର ବିରୋଧୀ ବିଚାର କରିବା ଭୁଲହେବ । ଇତିହାସର କୌଣସି ଏକ ସମୟରେ ବୌଦ୍ଧ ଧର୍ମର ବିସ୍ତାରରେ ବନ ଧର୍ମର ଲୋପ ହୋଇଥିବା ସମ୍ଭବ । କିନ୍ତୁ ଇତିହାସର ଧାରାକୁ ଓଲଟାଣି ନ ବୁହାଇ, ବର୍ତ୍ତମାନ ସ୍ଥିତିର ପରିପ୍ରେକ୍ଷୀରେ ବନଧର୍ମ ଓ ବୌଦ୍ଧଧର୍ମକୁ ପରସ୍ପରର ପରିପୂରକ ମାନିବା ବୁଦ୍ଧିମତ୍ତାର କାର୍ଯ୍ୟ ହେବ । ତିବ୍‌ବତ ଅସ୍ମିତାର ଆଧାର ଯେ ଉଭୟ, ଏକଥା ମାନିବାକୁ ହେବ ।

ତିବ୍‌ବତ ସଂସ୍କୃତି ଭାରତୀୟ ଓ ଚୀନ ସଂସ୍କୃତି ଦ୍ୱାରା ପ୍ରଭାବିତ ହେଲେ ସୁଦ୍ଧା ଏହାର ନିଜସ୍ୱ ପରମ୍ପରା ରହିଛି । ଏହି ପରମ୍ପରା ଏଠାରେ ବାସ୍ତୁକଳା, ଚିତ୍ରକଳା, ନୃତ୍ୟ ଓ ସଙ୍ଗୀତକଳା, ସ୍ଥାପତ୍ୟକଳା ଆଦିରେ ସୁରକ୍ଷିତ । ତିବ୍‌ବତ ରନ୍ଧନକଳାର ସ୍ୱାତନ୍ତ୍ର୍ୟ ମଧ୍ୟ ଦେଖିବାର ଅଛି । ଚୀନର ତିବ୍‌ବତ ଅଧିକାର ସଙ୍ଗେ ସଙ୍ଗେ କେବଳ ଯେ ସେଠାର ଧର୍ମକୁ ମାରିଦେବାର ଚେଷ୍ଟା ହେଲା ତା'ନୁହେଁ, ତିବ୍‌ବତ ସଂସ୍କୃତିର ସମସ୍ତ ପରିପ୍ରକାଶକୁ ନଷ୍ଟ କରିଦେବାର ଚେଷ୍ଟା ହେଲା । ତିବ୍‌ବତର ଧର୍ମପ୍ରାଣ ଲୋକଙ୍କ ଉପରେ ଯେପରି ଭାବରେ କମ୍ୟୁନିଷ୍ଟବାଦ ଚପେଇଦେବାର ଚେଷ୍ଟା ହେଲା, ସେଥିରୁ ଜଣାଗଲା ଯେ ପୁଞ୍ଜିବାଦୀ ଶୋଷଣ ପ୍ରକ୍ରିୟାଠାରୁ କମ୍ୟୁନିଷ୍ଟବାଦର ଶୋଷଣ ପ୍ରକ୍ରିୟା କୌଣସି ଗୁଣରେ କମ୍ ନୁହେଁ ।

ଚୀନାଙ୍କ ତିବ୍‌ବତ ଆକ୍ରମଣର ଗୋଟିଏ ଫଳ ହେଲା ଯେ ଦଲାଇ-ଲାମାଙ୍କ ସାଙ୍ଗରେ ପ୍ରାୟ ୮୦୦୦୦ ତିବ୍‌ବତୀ ଲୋକ ସୀମା ଅତିକ୍ରମ କରି ଭାରତର ଆଶ୍ରୟ ନେଇଛନ୍ତି । ସେମାନେ ଭାରତରେ ଆପଣା ଧର୍ମ ଓ ସଂସ୍କୃତି ବଞ୍ଚେଇ ରଖିବାରେ ସମର୍ଥ ହୋଇଛନ୍ତି । ସେମାନେ କେବଳ ଭାରତ ନୁହେଁ, ସମଗ୍ର ପୃଥିବୀର ଧ୍ୟାନ ଆପଣା ସମସ୍ୟା ପ୍ରତି ଆକର୍ଷଣ କରିବାରେ ସଫଳ ହୋଇଛନ୍ତି ।

ତିବ୍ବତ ଏସିଆର ମଧ୍ୟମଣି । ଭାରତ ଓ ଚୀନ ଦୁଇ ମହାଦେଶକୁ ଅଲଗା କରି ରଖୁଥିବା ଏହି ସ୍ୱତନ୍ତ୍ର ରାଜ୍ୟର ପରିସର ପ୍ରାୟ ଆଠଶହ ପଚୃଶ ହଜାର ବର୍ଗମାଇଲ । ଏହା ପୃଥିବୀର ଉଚ୍ଚତମ ବସନ୍ତ । ଇତିହାସର ଗତି ବିଚିତ୍ର । ଗୋଟିଏ ସମୟରେ ଚୀନର ଏକ ବିଶେଷ ଅଂଶ ତିବ୍ବତର ଅଙ୍ଗଥିଲା; କିନ୍ତୁ ଚୀନାମାନଙ୍କ ମତରେ ଯେତେବେଳେ ଉଭୟ ଚୀନ ଓ ତିବ୍ବତ ମଙ୍ଗୋଲ ଅଧିକାରଭୁକ୍ତ ହେଲା, ସେତେବେଳେ ତିବ୍ବତ ଚୀନର ଅଭିନ୍ନ ଅଙ୍ଗ ହୋଇଗଲା, ଏହି ଅଦ୍ଭୁତ ଯୁକ୍ତି ଦେଖାଇ ୧୯୪୯ରେ ଚୀନ ତିବ୍ବତ ଅଧିକାର କଲା ଓ ୧୯୫୧ରେ ଜୋରକରି ଏକ ସତର ଦଫା ଚୁକ୍ତିନାମାରେ ଦସ୍ତଖତ କରେଇନେଲା । ଇଂରେଜମାନେ ଭାରତକୁ ଆସି ଯେପରି ଅନୁନ୍ନତ ଭାରତୀୟଙ୍କୁ ସଭ୍ୟ କରେଇବାର ଦାୟିତ୍ୱ ନେଲେ, ଚୀନାମାନେ ସେହିପରି ପଛୁଆ ତିବ୍ବତୀୟଙ୍କୁ ଆଗୁଆ ଓ ସଭ୍ୟ କରିବାରେ ଦାୟିତ୍ୱ ନେଇ ତିବ୍ବତରେ ରହିଲେ ।

ଚୀନାମାନେ ତିବ୍ବତ ଅଧିକାର କରିବା ପରଠାରୁ ତିବ୍ବତୀୟମାନଙ୍କର ଧନ, ଜୀବନ, ମାନସମ୍ମାନ, ସ୍ୱତନ୍ତ୍ରତା, ଜୀବନଶୈଳୀ ଆଦି ବିପନ୍ନ ହୋଇଛି । ସାମ୍ୟବାଦୀ ଶାସନ ବିରୋଧରେ କାର୍ଯ୍ୟ କରୁଥିବା ସନ୍ଦେହରେ କେତେ ଯେ ତିବ୍ବତୀୟ ବନ୍ଦୀହୋଇ ଯନ୍ତ୍ରଣା ଭୋଗିଚନ୍ତି ତା'ର ଇୟତ୍ତା ନାହିଁ ।

ଶାରୀରିକ ଯନ୍ତ୍ରଣା ତିବ୍ବତୀୟଲୋକଙ୍କର ସ୍ୱାଧୀନତାର ସଂକଳ୍ପକୁ ଆହୁରି ଦୃଢ଼କରିଛି । ହଜାର ହଜାର ଯୁବକ ହସି ହସି ଗୁଳି ଆଗରେ ଛାତି ଦେଖେଇଛନ୍ତି । ଜେଲ ଭିତରେ ଅସହ୍ୟ ଯନ୍ତ୍ରଣାର ମୁକାବିଲା କରିଛନ୍ତି କମ୍ପା ଶ୍ରମ ଶିବିରରେ ଅକଥନୀୟ ନିର୍ଯାତନା ସହିଛନ୍ତି । ସ୍ୱାଧୀନତା ପାଇଁ ମଣିଷର କ୍ଷୁଧା ଦୁର୍ବାର । ରୁଷ ଆନ୍ଦୋଳନର ୭୦ବର୍ଷ ପରେ କମ୍ୟୁନିଷ୍ଟବାଦର ବିଲୋପ ଆଜି ପୃଥିବୀର ସବୁ ସ୍ୱାଧୀନତା ଓ ଗଣତନ୍ତ୍ରପ୍ରେମୀ ଲୋକଙ୍କ ମନରେ ନୂଆ ବିଶ୍ୱାସ ସୃଷ୍ଟି କରିଛି । ତିବ୍ବତ ଯେ ଦିନେ ସ୍ୱାଧୀନ ହେବ ଏଥିରେ ସନ୍ଦେହ ନାହିଁ । ଏହି ସ୍ୱାଧୀନତା ସଂଗ୍ରାମକୁ ନୈତିକ ସାହାଯ୍ୟ ଓ ସମର୍ଥନ ଜଣେଇଲେ ଏହା ଯେ ତ୍ୱରାନ୍ୱିତ ହେବ ଏଥିରେ ମଧ୍ୟ ସନ୍ଦେହ ନାହିଁ ।

●

# ଠିକ୍ ବେଠିକ୍

ଜାମସେଦପୁରରୁ ଉତ୍କଳ ଏକ୍ସପ୍ରେସରେ ଭୁବନେଶ୍ୱରକୁ ଆସିବାର ଥାଏ । ଗାଡ଼ି ୧୦ଟା ୨୫ ମିନଟ୍‌ରେ । ସମସ୍ତେ କହିଲେ ଏ ଗାଡ଼ି କେତେବେଳେ ହେଲେ ଠିକ୍ ସମୟରେ ଆସେନାହିଁ । ଜଣେ କହିଲେ ମାଉସୀ ଗଲାଦିନ ଗାଡ଼ି ତିନିଟାରେ ପହଞ୍ଚିଲା । ଆଉ ଜଣେ କହିଲେ, ମୁଁ ଭାଇଙ୍କି ଛାଡ଼ିବାକୁ ଯାଇଥିଲି । ପରଦିନ ସକାଳେ ଗାଡ଼ି ଆସିଲା । ଆଉଜଣେ ଅଟ୍ଟହାସ କରି କହିଲେ ଆପଣ ତ ନିଶ୍ଚେ ଏ ଗପ ଶୁଣିଥିବେ । ଥରେ ଗୋଟେ ଗାଡ଼ି ଠିକ୍ ସମୟରେ ପହଞ୍ଚିଗଲା । ଆଶ୍ଚର୍ଯ୍ୟ ହୋଇ ଜଣେ ଭଦ୍ରଲୋକ ଟିକଟ ବାବୁଙ୍କୁ ପଚାରିଲେ ଆଜି କୋଉ ଦିଗରେ ସୂର୍ଯ୍ୟ ଉଇଁଛି କି ? ଟିକଟବାବୁ କହିଲେ ଏଇଟା କାଲିକାର ଗାଡ଼ି । ଚବିଶଘଣ୍ଟା ଡେରିରେ ପହଞ୍ଚିଲା । ଏସବୁ ଶୁଣିବା ସତ୍ତ୍ୱେ ମୁଁ ଜିଦ୍ ଧରିଥାଏ ଯେ ଗାଡ଼ିବେଳ ଆଗରୁ ଷ୍ଟେସନ୍‌ରେ ପହଞ୍ଚିବାକୁ ହେବ । ବିଶେଷକରି ଯେତେବେଳେ ସମୟ ଜାଣିବାର ବାଟ ନାହିଁ । ଆମେ ଗାଡ଼ି ଆସିବାର ପାଞ୍ଚ ମିନଟ୍ ଆଗରୁ ଷ୍ଟେସନ୍‌ରେ ପହଞ୍ଚିଲୁ । ଦେଖିଲୁବେଳକୁ ଗାଡ଼ି ଠିକ୍ ସମୟରେ ଅଛି । ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଗାଡ଼ି ଠିକ୍ ସମୟରେ ଛାଡ଼ିଲା ତ କେତେ ମନ୍ତବ୍ୟ । ଥରେ ମତେ ଜଣେ କହିଲେ ଆପଣ ଯାଉଥିବାରୁ ଆଜି ପ୍ଲେନ ଠିକ୍ ସମୟରେ ଯାଉଛି । ମୁଁ ଯେତେ କହିଲେ ଯେ ବହୁଥର ପ୍ଲେନ ବିଳମ୍ବରୁ ଭୋଗିଛି, ସେ ଶୁଣିବାକୁ ଜମା ରାଜି ନୁହଁନ୍ତି ।

ଅଫିସ୍ ଆରମ୍ଭ ନଅଟାରେ । କିନ୍ତୁ ବସନ୍ତବାବୁ ଯାଆନ୍ତି ଏଗାରଟାରେ । ତାଙ୍କ ହାକିମ ବି ସେତିକିବେଳକୁ ଆସନ୍ତି । ତେଣୁ ତଳ ତଳିଆଙ୍କୁ କହିବାକୁ ତାଙ୍କର ମୁହଁ ନାହିଁ । ଯଦି କେବେ କେମିତି ହାକିମହୁକୁମା ଆସନ୍ତି ସେଦିନ ଟିକିଏ ଆଗରୁ ଆସିବାକୁ ପଡ଼େ । କିନ୍ତୁ ଯାହା ହେଉଛି ବ୍ୟତିକ୍ରମ ।

କଥା ହେଉଛି ଠିକ୍ ସମୟରେ ଗାଡ଼ି ଆସିଲେ ଆଜିକାଲି ଲୋକଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି । ଠିକ୍ ବେଳରେ ଅଫିସ୍ ଗଲେ ଲୋକେ ବାଇା ହେଉଛନ୍ତି । ଠିକ୍ ଭାବରେ କୌଣସି କାମ ହୋଇଗଲେ ତା'ପଛରେ ନିଶ୍ଚୟ କିଛି କାରସାଦି

ଥିବା ଲୋକଙ୍କ ଧାରଣା । ଅଥଚ ମୋ ପିଲାଦିନେ ଅବସ୍ଥା ପୂରା ସଂପୂର୍ଣ୍ଣ ବିପରୀତ ଥିଲା । ଠିକ୍ ବେଳରେ ଠିକ୍ କାମ ନୋହିଲେ ଆମେ ଗାଳି ଖାଉଥିଲୁ । କିଏ କାମ ଖଇରୁ କଲେ ଆମେ ଗାଳି ଦେଉଥିଲୁ...ଅଳସୁଆ ନିକମାଟାଏ କରେ ! ଆଜି କାମ କରିବା ଲୋକ ଗାଳି ଖାଉଚି । ଏତେ କାମ କର, ଠିକ୍ ସମୟରେ ଅଫିସକୁ ଯାଇ ଅନ୍ୟମାନଙ୍କ ଆଗରେ ଖରାପ ଉଦାହରଣ ରଖା ହେଉଚି । କାମ କରିବା ରୀତି ବଦଳାଅ ।

ମୋ ପିଲାଦିନେ ଯିଏ ଋଣ ନ ନେଉଥିଲା ସିଏ ସମାଜରେ ମାନ୍ୟ ହେଉଥିଲା । ଆଜିକାଲି ଯିଏ ଋଣ ନନେଲା ତାକୁ ବୋକା କୁହାଯାଉଚି । ଆଉ ଋଣ ନେଇ ଫାଙ୍କି ଦେଇପାରିଲେ ତାକୁ ପାରିବାର ପଣିଆଁରେ ଗଣାଯାଉଚି । ଗାଁ ଗାଁରେ ବ୍ୟାଙ୍କ । ଋଣ ଦେଇ ଯେଉଁ ଟିକିକ ଶକ୍ତିସାମର୍ଥ୍ୟ ଗାଁରେ ଅଚ୍ଛି ସେତିକ ଶୋଷି ନେବାକୁ ସମସ୍ତେ ଉଦ୍‌ବିଗ୍ନ ।

ମୋ ପିଲାଦିନେ ଲୋକେ କହୁଥିଲେ ମୁଁ ପିଲାଛୁଆର ବାପା । ମିଛ କହିବି ନାହିଁ । ଆଜିକାଲି ସମସ୍ତ ବଦଳିଯାଇଚି । ସେଇ ଲୋକେ କହୁଛନ୍ତି, ମୁଁ ପିଲାଛୁଆର ବାପ । ସତ କହିପାରିବି ନାହିଁ । ମୋ ପିଲାଦିନେ କୁହାଯାଇଥିଲା, ପାଠପଢ଼ିଲେ ମଣିଷ ହେବ । ଆଜି ସ୍କୁଲ କଲେଜକୁ ଅମଣିଷ ତିଆରି କାରଖାନା କୁହାଯାଉଚି ।

ଖାଲି ଠିକ୍ କରି ପାଠ ପଢ଼ିଲେ ହେବନାହିଁ । ଆମ ଗାଁ ପିଲା ଶତକଡ଼ା ୯୦ ରଖି ପାସ୍ କଲେ ବି ଗୃହକରି କମ୍ପା ଅଧିକ ପାଠ ପଢ଼ିବାକୁ ଅଯୋଗ୍ୟ ବିବେଚିତ ହେଇଛନ୍ତି । ସେଦିନ ଜଣେ ଭଦ୍ରଲୋକ ଭୁବନେଶ୍ୱରର ଗୋଟିଏ ଅନୁଷ୍ଠାନ କଥା କହୁଥିଲେ । ଶତକଡ଼ା ୫୦ ଛାତ୍ରଛାତ୍ରୀ ବଡ଼ବଡ଼ିଆଙ୍କ ପୁଅଝିଅ । ଯେମାନେ ହୁଅନ୍ତୁ ପଛେ ଗଧ । କିନ୍ତୁ ବାପମା'ଙ୍କ ଜୋର୍‌ରେ ଯେମାନେ ସେଠାର ଛାତ୍ର । ସେଠି ପାଠ ଅପେକ୍ଷା ଶାଠର କଦର ବେଶୀ । କିନ୍ ପ୍ୟାଣ୍ଟ ତା ପୁଣି ବ୍ୟାଗ ହୋଇଥିବ । ଏକୁ ନ ପିନ୍ଧିଲେ ସେଠାର ସଂସ୍କୃତରେ ଅଚଳ । କନଭେଣ୍ଟରେ ପଢ଼ିଲେ ତ କଥା ନାହିଁ । ଇଂରାଜୀ ଫୋ-ଫା ନ କହିପାରୁଥିଲେ ସେ ପାଠ କୁଆଡ଼େ ହେବନାହିଁ । ଆଉ ମଦ ନ ପିଇଲେ କି ମାଷ୍ଟ୍ରି କି ଛାତ୍ର ଅପାରଗ ବିବେଚିତ । ରିସର୍ଚ୍ଚ କରିବା କ୍ଷେତ୍ରରେ ଅଯୋଗ୍ୟତା । ଏମିତି କାମକର ଯାହା ଅନୁଷ୍ଠାନକୁ ପଇସା

ଆଣିବ । ଋସର୍ଚ୍ଚରେ ତ ପଇସା ଖର୍ଚ୍ଚ । ମୋ ପିଲାଦିନେ ଆମ ମାଇନର ସ୍କୁଲ ହେଡ଼ମାଷ୍ଟ୍ରେ ଖଣ୍ଡେ ଲୁଗା ପିନ୍ଧି ଖଣ୍ଡେ ଗାମୁଛା ପକେଇ ଖୋଲା ଦେହରେ ସ୍କୁଲକୁ ଆସୁଥିଲେ । କୋଉଦିନ କୁରୁତା ଖଣ୍ଡେ ପିନ୍ଧିଲେ ବି ସ୍କୁଲରେ ପହଞ୍ଚିଲା ସାଙ୍ଗେ ସାଙ୍ଗେ ତା' ଉତ୍ତୁରିହୋଇ କାନ୍ଥରେ ଟଙ୍ଗା ହେବ । ପିଲାଙ୍କର ତ ୟୁନିଫର୍ମ ନଥିଲା । ଯାହାକୁ ଯାହା ମିଳିଲା ତା' ପିନ୍ଧି ଆସୁଥିଲେ । ଏପରି ପରିବେଶରୁ ଆସୁଥିବା ପିଲାଏ ଯେ ସହରୀ ପିଲାଙ୍କ ତୁଳନାରେ ଅସୁବିଧାରେ ପଡ଼ୁଥିବେ ଏଥିରେ ସନ୍ଦେହ କ'ଣ ଅଛି ?

ମୋଟ ଉପରେ ମୋ ପିଲାଦିନ ସାଙ୍ଗରେ ଆଜକୁ ତୁଳନା କଲେ ମୂଲ୍ୟବୋଧରେ ଯେଉଁ ପରିବର୍ତ୍ତନ ଘଟିଛି ଗୋଟିଏ ଦୃଷ୍ଟିରୁ ମୁଣ୍ଡରେ ଛୁଡ଼ାହୋଇ ପୃଥିବୀ ଦେଖିବା ପରି ହେବ । ମୁଣ୍ଡରେ ଛୁଡ଼ାହେଲେ ବୁଦ୍ଧି ବଢ଼େ । କିନ୍ତୁ ବୁଦ୍ଧି ବଢ଼ିଲେ ଯେ ବିଜ୍ଞତା ବଢ଼ିବ ସେପରି କିଛି କାରଣ ନାହିଁ । ଆଜକାଲି ପିଲାଙ୍କର ବୁଦ୍ଧି ନିଶ୍ଚୟ ବଢ଼ିଛି ! କିନ୍ତୁ ବିଜ୍ଞତା କେତେଦୂର ବଢ଼ିଛି, ଦେଖିବାର କଥା ।



# ଅବତାର

ଦଶ ଅବତାରର କଳ୍ପନା କେତେ ପୁରୁଣା ପଣ୍ଡିତେ ବିଗୁରନ୍ତୁ । ଦଶ ଅବତାରର ମୂଳ ଧର୍ମରେ, ଦର୍ଶନରେ କି ସତକୁ ସତ ସୃଷ୍ଟି ବିବର୍ତ୍ତନର ଇତିହାସରେ ଏକଥା ବି ପଣ୍ଡିତମାନେ ତର୍କ କରନ୍ତୁ । ମୁଁ ଯେତେବେଳେ ଦଶ ଅବତାର କଥା ଭାବେ ମଣିଷ ଚରିତ୍ରରେ ଏଇ ଅବତାରମାନଙ୍କର ଦୋଷଗୁଣ କେମିତି ମିଶି ହୋଇ ରହିଛି ସେଇକଥା ଭାବି ହସମାଡ଼େ । ଯିଏ ଏଇ ଦଶ ଅବତାରର ତର୍କଣା କରିଛନ୍ତି ତାଙ୍କର ଦୃଷ୍ଟିଭଙ୍ଗୀର ଗଭୀରତା ପ୍ରତି ସମ୍ମାନରେ ମୁଣ୍ଡ ନଇଁଆସେ ।

ମତ୍ସ୍ୟ ଅବତାର କଥା ଭାବନ୍ତୁ । ଇଂରାଜୀରେ **Fish Logic** ବା ସଂସ୍କୃତର ମତ୍ସ୍ୟନ୍ୟାୟ କଥା ଏଇ ଅବତାରରୁ ମଣିଷମାନେ ନେଇଛନ୍ତି । ବଡ଼ମାଛ ସାନମାଛକୁ ଖାଇବ ଏଇଆ ତ ମତ୍ସ୍ୟନ୍ୟାୟ । ଏଇ ନ୍ୟାୟରେ ବଳୁଆ ଦୁର୍ବଳ ଉପରେ ପ୍ରଭୁତ୍ୱ କରିବା, ଧନୀ ଗରିବକୁ ହୀନମାନ କରିବା, ଆଗ ବଢ଼ୁଆ ଦେଶ ପଛୁଆ ଦେଶକୁ ଶୋଷଣ କରିବା ଯଥାର୍ଥ । ଯେଉଁମାନେ ଋଷି ଗଙ୍ଗାଙ୍କୁ ଚଳୁ କରିବା କଥା ଲେଖିଲେ କି କୋଉ ଋଷି ସମୁଦ୍ର ଶୋଷିବା କଥା ଲେଖିଲେ, ତାଙ୍କ ବଡ଼ ଶୋଷରେ କେତେ ଜଳଚର ମଲେ, କେତେ ସାନଶୋଷ ଅକାରଣେ ମରିଗଲ, ସେ ବିଷୟରେ ତ କାହିଁ ପଦେ ଲେଖିଲେ ନାହିଁ । ରବୀନ୍ଦ୍ରନାଥ କାବ୍ୟେର ଉପେକ୍ଷିତା ଲେଖି ନାୟିକାଙ୍କ ବିଷୟରେ ଆଗ୍ରହ ପ୍ରକାଶ କଲେ । ସାଧାରଣ ଜୀବନରେ ଉପେକ୍ଷାରେ କାନ୍ଦିବାକୁ କାହାର ବା ଲୁହ ଅଛି ?

ମଣିଷର ଅଳସୁଆମି, ତାର କଚ୍ଛପ ଗତି, କଚ୍ଛପ ଅବତାରରୁ ମଣିଷର ଶିକ୍ଷା । ଆପଣ କହିପାରନ୍ତି, ଯେତେବେଳେ ମଣିଷଗଢ଼ା କୃତ୍ରିମ ଉପଗ୍ରହ ଘଣ୍ଟାରେ ଅଠର ହଜାର ମାଇଲ ବେଗରେ ଯାଉଛି, ମୁଁ କଚ୍ଛପଗତି କଥା କହୁଛି କେମିତି ? ପୃଥିବୀ ବାହାରକୁ କି ମାଟି ଉପରକୁ ଯିବାକୁ ମଣିଷ ଯେତେ ବେଗ ଦେଖାଉ ନା କାହିଁକି, ଇଭାନ ଇଲିଚଙ୍କ ହିସାବ ଅନୁସାରେ

ମାଟି ଉପରେ ମଣିଷର ହାରାହାରି ଗତିବେଗ ଘଣ୍ଟାରେ ପଚାଶ କିଲୋମିଟର । ଏଇ ଅବତାରର ଆଉ ଗୋଟିଏ ନମୁନା ମଣିଷର କଇଁଛ ପିଠି । ଇନ୍ଦ୍ରଦ୍ୟୁମ୍ନ ପୋଖରୀର କଇଁଛ କଥା ଆପଣ ଭାବନ୍ତୁ । ଭାର ବୋହିବା ମଣିଷର ଅଭିଶାପ, ସେ ଭାର ଧାନଭାର ହେଉ କି ଜନଭାର ହେଉ । ଯାର ଆଉ ଗୋଟିଏ ଦାଗ ହେଲା ମୋଟା ଚମଡ଼ା । ସଂସାରର ମାଡ଼ ମଣିଷ ପିଠିକି କାଟେ ନାହିଁ କି ଜୀବନର ଆଘାତ ଓ ଅପମାନ ମଣିଷର ଏଇ କଇଁଛ ଚମଡ଼ାକୁ ସହଜେ ଭେଦିପାରେ ନାହିଁ ।

ବରାହ ଅବତାରରୁ ମଣିଷ ଜଙ୍ଗଲି ବାର୍‌ହାର ଗୁଣ ପାଇଛି । ସାମ୍‌ନାରେ ଯିଏ ପଡ଼ିଗଲା ତାକୁ ଭୁସି, ଚିରି, ମାଡ଼ିଯିବା ତା'ର ଲକ୍ଷଣ । ଖାଇବାରେ ସଫା ମଇଳାର ବାରଣ ନାହିଁ, ଆଉ କାଦୁଅ ଘାଣ୍ଟିବାରେ ସମସର କେହି ନାହିଁ ।

ଆଉ ନରସିଂହ ? ପ୍ରତି ମଣିଷ ଅଧାମଣିଷ ଅଧା ପଶୁ । ମଣିଷ ମନରେ ଅନ୍ଧାର ଆଲୁଅ ସାଙ୍ଗକୁ ଗୋଟାଏ ଗୋଧୂଳି ଅଂଶ ମଧ୍ୟ ଅଛି । ଏଇ ମାନସିକତାରେ ମଣିଷର ମାତ୍ରା ଅମାତ୍ରା ବିଗ୍ଭର ନଥାଏ । ମଣିଷ ସଂଖ୍ୟା ଯେଉଁ ଗତିରେ ବଢ଼ୁଚି, ସେଥିରେ ମଣିଷ ଗଛ ଉପରେ, ଗଛ ତଳେ, ପୋଲ ତଳେ, ପାଇପ୍ ଭିତରେ, ଖୋଳ ଭିତରେ, ଖାଲ ଭିତରେ ଶୋଇଲାବେଳେ, ଖମ୍ବ ଭିତରୁ ନରସିଂହ ବାହାରିବା ଆଶ୍ଚର୍ଯ୍ୟ କ'ଣ ? ଲୋକକଥାର ସେଇ ଝିଅ ଖମ୍ବ ଭିତରେ ପଶିବା ଆଗରୁ ପଟେ ଚପଲ ଛାଡ଼ି ନ ଯାଇଥିଲେ ଏଇ ଖମ୍ବ ରହସ୍ୟ ଖୋଲାସା ହୋଇଥାନ୍ତା କେମିତି ?

ମଣିଷର ଖର୍ବ ଅବସ୍ଥା, ସାନମନ, ଶ୍ରେଷ୍ଠଲୋକ ଇଏ ସବୁ ବାମନ ଅବତାରର ଯନ୍ତ୍ରକ । ବାମନ ହୋଇଥିବାରୁ ସିନା ମଣିଷ ଚନ୍ଦ୍ରକୁ ହାତ ବଢ଼ାଏ । ଖର୍ବ ହୋଇଥିବାରୁ ସିନା ସୁରତରୁ କୁସୁମ ବାଞ୍ଛା କରେ । ସାନ ଥିବାରୁ ସିନା ବଡ଼ର ଅହଂକାର । ଶ୍ରେଷ୍ଠ ଲୋକ ନଥିଲେ ଆପଣଙ୍କ ବଡ଼-ଲୋକର କ'ଣ ବା ମୂଲ୍ୟ ଥାଆନ୍ତା ?

ପର୍ଶୁରାମ ଅବତାରରେ କ୍ଷତ୍ରିୟ ରୁଧିରରେ ଜଗତର ପାପ ଶାନ୍ତି ହୋଇଥିଲା । ଆଜି ହରିଜନ ରକ୍ତରେ ଭାରତରେ ଯେଉଁ ହୋରିଖେଳ ହେଉଚି । ଧର୍ମ ନାଁରେ, ଜାତି ନାଁରେ ପୃଥିବୀରେ ଯେଉଁ ରକ୍ତପାତ ହେଉଚି

ତା ମଣିଷ ଚରିତ୍ରରେ ଏଇ ଅବତାରର ସନ୍ତକ । ସିଆ ସୁନ୍ନୀ ମଗାମରି, ଶିଖ ନିରଙ୍କାରୀ ମରାମରି, ଇଂରେଜ ଆଇରିଶ ମରାମରି, ସିଂହଳୀ ତାମିଲ କି ପଠାଣ ଇହୁଦୀ ମରାମରି ଏଥିରେ ଜଗତର ପାପ ବଢ଼ୁଛି କି କମୁଛି ଏକଥା ବିଚାର କରିବାକୁ କାହାର ବେଳ ଅଛି ?

ରାମ ରାବଣକୁ ମାରିଲେ, ପୁଣି ମହୀରାବଣକୁ ବି ମାରିଲେ । ତେବେ ବି ରାବଣ ମଲାନାହିଁ । ଉତ୍ତର ଭାରତରେ ପ୍ରତି ଦଶହରାରେ ଯେଉଁ ରାବଣ ପୋଡ଼ି ତା' ମଣିଷ ଭିତରେ ଲୁଚି ରହିଥିବା ବିଦ୍ୱେଷର ପ୍ରତୀକ ପ୍ରକାଶ । କୋଉ ସାନ କଥାରେ ରାମ ଆପଣା ସ୍ତ୍ରୀକୁ ଏତେ ଦଣ୍ଡ ଦେଲେ । ଏ କାଳର ସ୍ତ୍ରୀ ବିଦ୍ୱେଷ, ସ୍ତ୍ରୀ ଅଣଦେଖା, ଯୌତୁକ ଯୋଗୁଁ ସ୍ତ୍ରୀ ପୋଡ଼ା ସବୁ ଏଇଥିର ପରିଣାମ । ରାମଭକ୍ତ ତୁଳସୀ କଣ ମିଛରେ ଲେଖିଥିଲେ, 'ଢୋ ଗଁବାର ପଶୁ ଶୁଦ୍ର ନାରୀ । ସକଲ ତାଡ଼ନା କେ ଅଧିକାରୀ' । ରାମ ଅବତାରରୁ ସ୍ତ୍ରୀ ତାଡ଼ନା ମଧ୍ୟ ମଣିଷ ଚରିତ୍ରକୁ ଆସିଲା ।

ହଳଖିଆ ହଳଧର ଅବତାରର ଶିକ୍ଷା । ଇଆର ଗୋଟିଏ ପରିଣାମ ଟ୍ରାକ୍ଟର ନିର୍ଭରତା । ଆଉ ଗୋଟିଏ ପରିଣାମ ଅନୁପସ୍ଥିତ ଜମିଦାରୀ । ବଣିକ ବୃତ୍ତି ସବୁକାଳରେ କୃଷି ଉପରେ ଆପଣା ସ୍ଥାନ କରି ନେଇଛି । ହେଲେ ମଧ୍ୟ କୃଷିନିର୍ଭର ଜୀବନ ଯେଉଁ ସଭ୍ୟତା ସୃଷ୍ଟି କରିଥିଲା, ତାହା ବଣିକ ସଭ୍ୟତାକୁ ଏକ ଚ୍ୟାଲେଞ୍ଜ । ହଳଖିଆ ବଣିକ ସଭ୍ୟତା ପ୍ରତିଷ୍ଠାର ଅଗ୍ରଦୂତ । ଏକ ଅକର୍ମଣ୍ୟ ସମାଜ ବ୍ୟବସ୍ଥାର ସଙ୍କେତ ।

ସମାଜରେ ଆନୁଷ୍ଠାନିକତାର ପ୍ରାଧାନ୍ୟ ଓ ଆପଣା ସ୍ୱାର୍ଥ ପାଇଁ ପଶୁଘାତ ମଣିଷ ଚରିତ୍ରରେ ବୁଦ୍ଧ ଅବତାରର ଅବଦାନ । ଏଇ ଦୁଇଟି ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ବୁଦ୍ଧ ଆପଣା ମତ ପ୍ରତିଷ୍ଠା କରିଥିଲେ । ସମୟର ବିବର୍ତ୍ତନରେ ହିଂସା ବିରୁଦ୍ଧରେ ଅହିଂସା ଯେମିତି ଆସିଥିଲା, ଅହିଂସା ଭିତରୁ ହିଂସାର ସେମିତି ସୃଷ୍ଟି ହୋଇଥିଲା । ଚଣ୍ଡାଶୋକ ଧର୍ମାଶୋକ ହୋଇଥିଲେ । ଧର୍ମର ବିଳମ୍ବରେ ଆଜର ଅଶୋକ ଚଣ୍ଡ ।

ମ୍ଳେଚ୍ଛ ନିଧନ ପାଇଁ କୃପାଣ ହସ୍ତ ହେବା ଅବତାରର ଶିକ୍ଷା । ଥରେ ତୁମ ଶତ୍ରୁକୁ ମ୍ଳେଚ୍ଛ କହିଦେଲେ ତେଣିକ ପଛରୁ ଛୁରୀମାର କି ଆଗରୁ ଗୁଳିମାର ଏଇଟା ସୁବିଧା ଅସୁବିଧା କଥା । ଯଦି ଗୋଟିଏ ଗୋଷ୍ଠୀକି ମ୍ଳେଚ୍ଛ କୁହାଯାଇପାରେ, ତେବେ ହାତବୋମା ଫୁଟାଇ, ଟ୍ରାଞ୍ଜିଷ୍ଟର ବୋମା ଫୁଟାଇ

କ ମଟରର ବୋମା ଲଗାଇ ଶତ୍ରୁ ଦୁଇଶହଙ୍କୁ ଉଡ଼େଇଦବା ତ ମିଛ । ଯଦି ଦୁଇ ଦେଶ ଭିତରେ ବା ଦୁଇ ଗୋଷ୍ଠୀ ଭିତରେ କନ୍ଦଳ ଲଗିଲା, ତେବେ ନିଶ୍ଚିତ ଶବ୍ଦର କୌଣସି ଅର୍ଥ ନାହିଁ । ବିଷାକ୍ତ ଗ୍ୟାସ, ଜଳନ୍ତା ଆଲକାତରା, ଗାଲଗ୍ନି ବର୍ଷ୍ଣ ବୋମା ସବୁ ନିୟମସିଦ୍ଧ । ଯୁଦ୍ଧରେ ଆଉ ପ୍ରେମରେ କୌଣସି କଥା ବାଦ୍ ଯାଏନାହିଁ । ପୁଣି ଅପରପକ୍ଷ ମ୍ଳେଚ୍ଛ ହୋଇଥିବାରୁ ସେମାନଙ୍କର ନିଧନ ଖାଲି କାମ୍ୟ ନୁହେଁ, ଧର୍ମ ।

କୋଉ କାଳରେ ପୁରାଣକାରମାନେ ଏଇ ଦଶ ଅବତାରଙ୍କୁ ଭଗବାନଙ୍କର ଦଶବିଧ ରୂପ ବୋଲି କହିଥିଲେ । ଆଜି ପ୍ରତ୍ୟେକ ମଣିଷ ଦଶାବତାର । ଦେବତା ଯେମିତି ଆପଣା ପ୍ରତିମାରେ ମଣିଷ ଗଢ଼େ, ମଣିଷ ସେମିତି ଆପଣା ମାପରେ ଦେବତା ତିଆରି କଲେ । ଏଇ ମଣିଷର ଦେବତା ହେବା ଆଉ ଦେବତାର ମଣିଷ ହେବା ପ୍ରକ୍ରିୟା ଭିତରେ କେତେବେଳେ ଯେ ଦଶ ଅବତାରରୁ ମଣିଷ ତା ଲାଗି ଗୁଣଗୁଡ଼ିକୁ ଆପଣାଇ ନେଇଛି, ସେକଥା ଆମେ ଦେଖି ମଧ୍ୟ ଦେଖିନୁ । ସେଇଥିପାଇଁ ଆଜି ଏଇ ଅବତାରବାଦର ବିଚାରର ପ୍ରୟୋଜନ ହୋଇପଡ଼ିଛି ।



ସାକ୍ଷାତକାର :

# ପଦ୍ମଶ୍ରୀ ପ୍ରଫେସର ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସହ

## କେତୋଟି ଅନ୍ତରଙ୍ଗ ମୁହୂର୍ତ୍ତ

ସୁଯୋଗ ସବୁବେଳେ ରହିଛି । ତାକୁ ଧରିପାରିବାର କ୍ଷମତା ହାସଲ କରିବା ଦରକାର । ଅପରପକ୍ଷରେ କଠିନ ପରିଶ୍ରମ ଓ ଅଧ୍ୟବସାୟ ଫଳରେ ସୁଯୋଗ ହାସଲ କରିବାକୁ ହେବ । ଦୁଇଟି ମତ ଆଂଶିକ ସତ ହେଲେ ହେଁ ତାଙ୍କ କ୍ଷେତ୍ରରେ ଉଭୟର ଏକ ଶୃଙ୍ଖଳିତ ତଥା ସୁସମଞ୍ଜସ ସମନ୍ୱୟ ଘଟିଛି । ଏଇଥିପାଇଁ ସେ ଓଡ଼ିଶାର ଏକ ଅଖ୍ୟାତ ପଲ୍ଲୀରୁ ଯାତ୍ରା ଆରମ୍ଭ କରି କାହିଁ କେତେଦୂର ଅତିକ୍ରମି ଯାଇଛନ୍ତି । ଜୀବନକୁ ବିଶ୍ଳେଷଣ କରିଛନ୍ତି ଭାଷାରେ, ବାକ୍ୟରେ, ଶବ୍ଦରେ ପୁଣି ଧ୍ୱନିରେ । ମଣିଷ ମୁଖର ଭାଷାକୁ ନେଇ ନାନାବିଧ ପରୀକ୍ଷା ନିରୀକ୍ଷା କରିଛନ୍ତି । ସଫଳ ହୋଇଛନ୍ତି ମଧ୍ୟ । ବିଶେଷକରି ଐତିହାସିକ ଭାଷା ବିଜ୍ଞାନ କ୍ଷେତ୍ରରେ ତାଙ୍କର ଅବଦାନ ଅବିସ୍ମରଣୀୟ । ସେହି ଗୁରୁଣାଂ ଗୁରୁ ମହୀମଣ୍ଡିତ କେନ୍ଦ୍ରୀୟ ପ୍ରାଦେଶିକ ଭାଷା ସଂସ୍ଥାନର ପୂର୍ବତନ ନିର୍ଦ୍ଦେଶକ ଏବଂ ଅଖିଳ ଭାରତ ସମାଜ ବିଜ୍ଞାନ ଏକାଡେମୀର ସଭାପତି ତଥା ସର୍ବଭାରତୀୟ ଖ୍ୟାତିସମ୍ପନ୍ନ ପ୍ରଥିତଯଶା ଭାଷାତତ୍ତ୍ୱବିତ୍ ହେଉଛନ୍ତି ପଦ୍ମଶ୍ରୀ ପ୍ରଫେସର ଡ଼ଃ ଦେବୀପ୍ରସନ୍ନ ପଟ୍ଟନାୟକ ।

ସାକ୍ଷାତ୍‌କାର—**ଶ୍ରୀ କୁଳମଣି ଓଝା**

ଇଣ୍ଟରଭ୍ୟୁଆର : ଆପଣ ପ୍ରଥମେ ଜଣେ ସାହିତ୍ୟର ଛାତ୍ର ତଥା ଅଧ୍ୟାପକ ଥିଲେ । ଭାଷା ବିଜ୍ଞାନ ପ୍ରତି କିପରି ଓ କେଉଁ ଅନୁପ୍ରେରଣାରୁ ଆକୃଷ୍ଟ ହେଲେ ?

ଦେବୀପ୍ରସନ୍ନ ପଟ୍ଟନାୟକ : ଯେ ହେଉଛି ଏକ ବିଚିତ୍ର ସମାବେଶ । ଭାଷା ହେଉଛି ସାହିତ୍ୟର ଶରୀର । ଗୋଟିଏ ଦୃଷ୍ଟିରୁ ଦେଖିଲେ ଭାଷା ଛଡ଼ା

ସାହିତ୍ୟ ନାହିଁ । ଯେମିତି ସାହିତ୍ୟ ଛଡ଼ା ଭାଷା ନାହିଁ । ଆମେ ସାହିତ୍ୟକୁ ମୌଖିକ ସାହିତ୍ୟ ଓ ଲିଖିତ ସାହିତ୍ୟ ଏହିପରି ଦୁଇ ଭାଗରେ ବିଭକ୍ତ କରିଛୁ । ଅର୍ଥାତ୍ ଯାହା କୁହାଯାଇଥାଏ ତାହା ଯେପରି ସାହିତ୍ୟ, ଯାହା ଲେଖାଯାଇଥାଏ ତାହା ମଧ୍ୟ ସାହିତ୍ୟ । ଭାଷା ମାଧ୍ୟମରେ ଏହାର ପ୍ରକାଶ । ସେଇଥିପାଇଁ ସାହିତ୍ୟ ପଢ଼ାଇବାବେଳେ ଭାଷା ପ୍ରତି ଆଗ୍ରହ ସୃଷ୍ଟି ହେବାରେ ସେମିତି କିଛି ଆଶ୍ଚର୍ଯ୍ୟ ହେବାର ନାହିଁ । ୧୯୫୭-୫୮ ମସିହାରେ ମୁଁ ପ୍ରଥମ କରି ଭାଷା ବିଜ୍ଞାନ ଶିବିରକୁ ଗଲି । ୧୯୫୯ରେ ବର୍ଷକ ପାଇଁ 'ପୁନା'ରେ କାମ କରିବାର ସୁବିଧା ମିଳିଲା । ଆଗ୍ରହ କ୍ରମେ ବଢ଼ିଲା । ୧୯୫୯ରେ ମୁଁ ଆମେରିକା ଗଲି ।

ଇସ୍ତାହାର : ଏ ଦିଗରେ ଆପଣ କେଉଁ ମହାନ୍ ବ୍ୟକ୍ତିମାନଙ୍କ ଦ୍ୱାରା ଅନୁପ୍ରାଣିତ ବା ପ୍ରଭାବିତ ହୋଇଛନ୍ତି ?

ଦେ. ପଟ୍ଟନାୟକ : ୧୯୫୩ ମସିହାରେ ଭାରତର ବିଶିଷ୍ଟ ଭାଷାବିଜ୍ଞାନୀ ଡ଼ଃ ସୁନୀତି କୁମାର ଚଟ୍ଟୋପାଧ୍ୟାୟଙ୍କ ସାଙ୍ଗରେ ପ୍ରଥମେ ମୋର ପରିଚୟ ହୁଏ । ତାଙ୍କ ଲେଖାରେ କିଛି ଭୁଲ୍ ଦେଖି ମୁଁ ତାଙ୍କୁ ଚିଠି ଲେଖିଲି । ବର୍ଷେଯାଏ ଚିଠି ଦିଆନିଆ ଚାଲିଲା । ସେହିଦିନୁ ତାଙ୍କ ସହ ମୋର ସମ୍ବନ୍ଧ । ଡ଼ଃ ସୁକୁମାର ସେନଙ୍କ ସହ ମଧ୍ୟ ମୋର ଘନିଷ୍ଠ ସମ୍ପର୍କ ଥିଲା । ମୁଁ ତାଙ୍କ ପାଇଁ 'କାଞ୍ଚି କାବେରୀ' ପୋଥି ମିଳାଇ ପାଠ ତିଆରି କରି ଦେଇଥିଲି । ଭାରତୀୟ ଆର୍ଯ୍ୟଭାଷା ସମ୍ବନ୍ଧରେ ତାଙ୍କ ପଢ଼ାଇବା ମୋ ମନରେ ଆଗ୍ରହ ସୃଷ୍ଟି କରିଥିଲା । ଓଡ଼ିଶାର ଡ଼ଃ କରୁଣାକର କର ତ ମୋର ମାଷ୍ଟର ଥିଲେ । 'ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ' ବିଷୟରେ ତାଙ୍କ କାମ ମୋତେ ବହୁ ଭାବରେ ଉତ୍ସାହିତ କରିଥିଲା । ପ୍ରଫେସର ଡ଼ଃ କୁଞ୍ଜବିହାରୀ ତ୍ରିପାଠୀ ମୋର ମାଷ୍ଟର ଥିଲେ, ବନ୍ଧୁ ବି ଥିଲେ । ଆମେରିକାର ପ୍ରଫେସର ଗର୍ଡନ୍ ଏଚ୍ ଫେୟାର ବ୍ୟାଙ୍କସ୍‌ଙ୍କ ପ୍ରଭାବ ମୋ' ଉପରେ ସବୁଠୁ ବେଶି । ଗୁର୍ଲିସ ହକେଟ୍ ମୋ' ପିଏଚ୍.ଡି. କମିଟିର ଚେୟାରମ୍ୟାନ୍ ଥିଲେ । ତାଙ୍କର ପାଖରୁ ମୁଁ ପାଠ ପଢ଼ିଛି । ରବର୍ଟ ହଲ୍ ଜୁନିଅର ମୋ' କମିଟିର ସଭ୍ୟ ଥିଲେ । ମରିସ୍ ଓପଲର୍ ମୋ ନୃତତ୍ତ୍ୱ ବିଭାଗର ନିର୍ଦ୍ଦେଶକ ଥିଲେ । ସେତେବେଳେ ଗ୍ରେମସ୍କି ନୂଆ ନୂଆ କରି ଭାଷା ବିଜ୍ଞାନ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥାନ୍ତି । ତାଙ୍କ

ସମ୍ବନ୍ଧ କଥାବାର୍ତ୍ତା କରି ତାଙ୍କ ଥିସିସ୍‌ର କପି ସଂଗ୍ରହ କଲି ଏବଂ ଐତିହାସିକ ଭାଷାବିଜ୍ଞାନ ସମ୍ବନ୍ଧରେ ଆଲୋଚନା କରି ମୁଁ ବହୁ ଉପକୃତ ହୋଇଛି । ଏମିତି ନାଁ ତାଲିକା କରି ବସିଲେ, କେତେ ନାଁ ମନକୁ ଆସିବ ।

ଭାରତ ବର୍ଷରେ କାର୍ତ୍ରେ, ଘାଟ୍‌ଗେ ଓ ପଣ୍ଡିତ କୃଷ୍ଣମୂର୍ତ୍ତି ମୋତେ ନାନା ଭାବରେ ଉତ୍ସାହିତ କରିଛନ୍ତି । ମୋର ସମସାମୟିକ ଓ ଛାତ୍ରଛାତ୍ରୀମାନଙ୍କ ବହୁ ଲୋକଙ୍କଠାରୁ ମୁଁ ବହୁ ଭାବରେ ଉପକୃତ ହୋଇଛି ।

ଇସ୍ତାହାର : ଭାଷାବିଜ୍ଞାନ ଅଧ୍ୟୟନ କ୍ଷେତ୍ରରେ ସୁଯୋଗସବୁ ଆପେ ଆପେ ଆସିଛି ନା ଆପଣଙ୍କୁ ଅକ୍ଳାନ୍ତ ପରିଶ୍ରମ ବା ଅଧ୍ୟବସାୟ କରିବାକୁ ପଡ଼ିଛି ?

ଡ. ପଟ୍ଟନାୟକ : ସୁଯୋଗ ବିଷୟରେ ଦୁଇଟି ମତ ରହିଛି । ଗୋଟିଏ ମତ ହେଉଛି ସୁଯୋଗ ସବୁବେଳେ ରହିଛି । ତାକୁ ଧରିପାରିବାର କ୍ଷମତା ହାସଲ କରିବା ଦରକାର । ଦ୍ୱିତୀୟ ମତଟି ହେଉଛି କଠିନ ପରିଶ୍ରମ ଓ ଅଧ୍ୟବସାୟ ଫଳରେ ସୁଯୋଗ ହାସଲ କରିବାକୁ ହେବ । ମୋର ମନେହୁଏ, ଉଭୟ ଆଂଶିକ ସତ । ମୋ କ୍ଷେତ୍ରରେ ମଧ୍ୟ ସେୟା' ଘଟିଛି ।

ଇସ୍ତାହାର : ଆପଣଙ୍କ ଛାତ୍ରଜୀବନ ସମ୍ପର୍କରେ କିଛି କୁହନ୍ତୁ ?

ଡ. ପଟ୍ଟନାୟକ : ଛାତ୍ର ଥିବାବେଳେ ରାଜନୀତି ପ୍ରତି ମୋର ବେଶି ଆଗ୍ରହ ରହିଥିଲା । ଓଡ଼ିଶାର ସୋସାଲିଷ୍ଟ ଆନ୍ଦୋଳନ ଓ ଯୁବ ଆନ୍ଦୋଳନରେ ମୁଁ ଭାଗ ନେଇଥିଲି । ୧୯୫୩ରେ ରେଙ୍ଗୁନ୍‌ଠାରେ ଅନୁଷ୍ଠିତ ହେଉଥିବା ଆନ୍ତର୍ଜାତିକ ସୋସାଲିଷ୍ଟ ସମ୍ମିଳନୀକୁ ମୁଁ ସଭ୍ୟ ହିସାବରେ ଯାଇଥିଲି । ତେଣୁ ପାଠ ପଢ଼ାରେ ଯେତେ ଗମ୍ଭୀର ଧ୍ୟାନ ଦେବା ପ୍ରୟୋଜନ, ତାହା ହେଉ-ନଥିଲା । ତାହାସତ୍ତ୍ୱେ ବି.ଏ. (ଅନର୍ସ) ଓ ଏମ୍.ଏ. ଶ୍ରେଣୀରେ ୟୁନିଭର୍ସିଟିରେ ପ୍ରଥମ ହେବା ମୋ' ପକ୍ଷରେ ସୌଭାଗ୍ୟର ବିଷୟ । ନାନା କାରଣରୁ ରାଜନୀତି ଛାଡ଼ିବା ସ୍ଥିର କରିବା ପରେ ଏ ଯୋଗ୍ୟତା ବହୁତ କାମରେ ଲାଗିଲା । ଭାଷାତତ୍ତ୍ୱ ପଢ଼ିଲାବେଳେ ପ୍ରଫେସର ସତ୍ୟେନ୍ ବୋଷ ମୋର ପ୍ରେରଣାର ସ୍ରୋତ ଥିଲେ । ସେ ନଥିଲେ ମୋତେ ହୁଏତ ଭାଷାବିଜ୍ଞାନ ପଢ଼ିବାର ସୁଯୋଗ ମିଳିନଥାନ୍ତା । ସେତେବେଳେ ପୂର୍ବାଞ୍ଚଳର କେହି ଛାତ୍ର ଭାଷାବିଜ୍ଞାନ ପଢ଼ୁନଥିଲେ । ପୂର୍ବାଞ୍ଚଳରେ ଭାଷା ବିଜ୍ଞାନର ବିସ୍ତାର କରିବାର

କଦ୍ ମୋ ମନରେ ଥିଲା । ପରବର୍ତ୍ତୀ କାଳରେ 'ଶାନ୍ତି ନିକେତନ'ରେ ଭାଷାବିଜ୍ଞାନ ବିଭାଗ ଖୋଲିବାକୁ ଚେଷ୍ଟା କରିଥିଲି । ମାତ୍ର ତାହା ସଫଳ ହୋଇପାରିନଥିଲା । ଭାଷାବିଜ୍ଞାନ ପଢ଼ିବା ପୂର୍ବରୁ ମୁଁ ଫାର୍ସୀ ଭାଷାରେ ଡିପ୍ଲୋମା କରିଥିଲି ।

ଇସ୍ତାହାର : ଓଡ଼ିଶା ତଥା ଓଡ଼ିଆ ଭାଷାରେ ଭାଷାବିଜ୍ଞାନ ସଂକ୍ରାନ୍ତ କୌଣସି ଉଲ୍ଲେଖଯୋଗ୍ୟ ଅଥବା ସନ୍ତୋଷଜନକ କାମ ହୋଇଛି କି ?

ଦେ. ପଟ୍ଟନାୟକ : ଓଡ଼ିଆ ଭାଷାରେ ସନ୍ତୋଷଜନକ କାର୍ଯ୍ୟ ହେବା ତ ଦୂରର କଥା । ଭାଷା ବିଜ୍ଞାନର ମୂଳଦୁଆ ପକାଇବାକୁ ଯେଉଁ କାମ ଦରକାର ତାହା ମଧ୍ୟ ହୋଇନାହିଁ । ଭାଷା ବିଜ୍ଞାନ ବିଷୟରେ ମୌଳିକ ଗ୍ରନ୍ଥ ରଚନାର ପ୍ରଚେଷ୍ଟା ହୋଇନାହିଁ କହିଲେ ଚଳେ । ଯାହାବା ହୋଇଛି, ସେ ସମ୍ପର୍କରେ ନକହିବା ଭଲ ।

ଇସ୍ତାହାର : ଭାବ ପ୍ରକାଶ ପାଇଁ ଭାଷା ପ୍ରୟୋଗ କରାଯାଏ ନା' ଭାବ ଲୁଚାଇବାକୁ ଭାଷାର ପ୍ରୟୋଗ ହୋଇଥାଏ ?

ଦେ. ପଟ୍ଟନାୟକ : ଭାବ ପ୍ରକାଶ ପାଇଁ ଭାଷାର ପ୍ରୟୋଗ କରାଯାଏ ଏବଂ ଭାବ ଲୁଚାଇବାକୁ ବି ଭାଷାର ପ୍ରୟୋଗ ହୋଇଥାଏ । ତେବେ ଭାଷା ଅନେକ ସମୟରେ ଗୋଟିଏ 'ଫ୍ରଣ୍ଟ' ଭଳି କାର୍ଯ୍ୟ କରେ । ମୁଁ ଯାହା କହୁଛି ତାହା ମୁଁ ଯାହା ଭାବୁଛି ତାର ପ୍ରକାଶ ନୁହେଁ । ଏପରି ଅବସ୍ଥା ହେଲେ ଭାଷା ଭାବକୁ ଲୁଚାଇବାରେ ସାହାଯ୍ୟ କରେ । ଭାଷା ଏକକ ମନନର ମାଧ୍ୟମ । ସେହି ଭାଷା ପୁଣି ସଞ୍ଚାରର ମାଧ୍ୟମ । ସାମାଜିକ ଗୋଷ୍ଠୀ ନିର୍ମାଣରେ ଭାଷାର ଅବଦାନ ଏକାନ୍ତ ଗୁରୁତ୍ୱପୂର୍ଣ୍ଣ ।

ଇସ୍ତାହାର : ଜଣେ ଭାଷା ବିଜ୍ଞାନର ଛାତ୍ରଙ୍କୁ କେଉଁସବୁ ବିଷୟ ପ୍ରତି ଧ୍ୟାନ ଦେବା ଦରକାର ।

ଦେ. ପଟ୍ଟନାୟକ : ଭାଷାବିଜ୍ଞାନର ଛାତ୍ରକୁ ମନେରଖିବାକୁ ହେବ ଯେ, 'ସମାଜ ହିଁ ତା'ର ପରୀକ୍ଷାଗାର । ଭଲ କାନ ଆଉ ଭାଷା ବିଜ୍ଞାନ ବିଷୟରେ ଟ୍ରେନିଂ ଥିଲେ ବିନା ଯନ୍ତ୍ରପାତିରେ ଭାଷାବିଜ୍ଞାନୀ ବହୁ କାମ କରିପାରିବେ' ।

ସମାଜରେ 'ପାର୍ଟିସିପାଣ୍ଟ ଅବଜରଭେସନ' ପଦ୍ଧତିରେ 'ସେ (ଭାଷାବିଜ୍ଞାନୀ) ସାମାଜିକ ଭାଷାବିଜ୍ଞାନର ବିଭିନ୍ନ ପର୍ଯ୍ୟାୟରେ କାମ କରିପାରିବେ । ତେଣୁ ଭାଷାବିଜ୍ଞାନର ଭଲ ଛାତ୍ରଙ୍କ ପାଇଁ କାମର ଅଭାବ ନାହିଁ । ନିରକ୍ଷରତା ଦୂରୀକରଣ ହେଉ, କ୍ଲାସରୁମ୍‌ରେ ମାଧ୍ୟମ ବା ବିଷୟରୂପେ ଭାଷାର ବ୍ୟବହାର ହେଉ, ସରକାରୀ କଳ, ବିଶ୍ୱବିଦ୍ୟାଳୟ କିମ୍ବା ବଜାରରେ ଭାଷାର ବ୍ୟବହାର, ରେଡ଼ିଓ ଓ ଟେଲିଭିଜନରେ ଭାଷାର ପ୍ରୟୋଗ ଆଦି ଯେ କୌଣସି କ୍ଷେତ୍ରରେ ଭାଷାବିଜ୍ଞାନର ଛାତ୍ର କାମ କରିପାରନ୍ତି । ସାହିତ୍ୟରେ ତ' ଭାଷାର ପ୍ରୟୋଗ ରହିଛି । ମନୋବୈଜ୍ଞାନିକ ଓ ସମାଜ ବୈଜ୍ଞାନିକ କିମ୍ବା ଟେକ୍‌ନିକ୍ ଦୃଷ୍ଟିରୁ ଭାଷାର ବିଶ୍ଳେଷଣ ଓ ଅନୁସନ୍ଧାନ ପାଇଁ କ୍ଷେତ୍ର ପ୍ରଶସ୍ତ ।

ଇସ୍ତାହାର : ଭାରତରେ ବହୁ ଭାଷାର ପ୍ରଚଳନ ଓ ବ୍ୟବହାର ରହିଛି । ତେବେ ଭାରତର ଭାଷାନୀତି ସମ୍ପର୍କରେ ଆପଣଙ୍କ ଦୃଷ୍ଟିଭଙ୍ଗୀ କ'ଣ ?

ଡ. ପଟ୍ଟନାୟକ : ଭାରତରେ ଭାଷାନୀତି ବୋଲି କିଛି ନୀତି ନାହିଁ । ଭାରତ ସରକାରଙ୍କ ବିଜ୍ଞାନ ନୀତି ଅଛି, ବାଣିଜ୍ୟ ନୀତି ଅଛି; କିନ୍ତୁ ଭାଷାନୀତି ନାହିଁ । ଯଦି ଭାରତ ପରି ବହୁଭାଷିକ ତଥା ସଂସ୍କୃତିମନ୍ତ ଦେଶରେ ଭାଷା ବ୍ୟବହାର ବିଷୟରେ ନୀତିର ଆବଶ୍ୟକତା ରହିଛି, ତଥାପି ଏ ଦିଗରେ ସରକାରଙ୍କ ଦୃଷ୍ଟି ଥିଲାପରି ମନେହେଉନାହିଁ ।

ଭାରତରେ ଯେଉଁ ତ୍ରିଭାଷୀ ସୂତ୍ର ଗ୍ରହଣ କରାଯାଇଛି, ସେ ବିଷୟରେ ବହୁମତ ଦେଖିବାକୁ ମିଳୁଛି । ଆମ ଦେଶରେ ବହୁଭାଷାକୁ ସମର୍ଥନ ନଦେଇ ଅଳ୍ପଭାଷାରେ କାମ ଚଳେଇନେବାର ମନୋବୃତ୍ତି ହେତୁ ଏ ପ୍ରକାର ଅବସ୍ଥା ସୃଷ୍ଟି ହୋଇଛି । ଏହା କିଛି ପରିମାଣରେ ପଶ୍ଚିମୀ ପ୍ରଭାବର ଫଳ । ପ୍ରାଇମେରୀ ଶିକ୍ଷା ମାତୃଭାଷାରେ ଦିଆଯିବା ଉଚିତ ବୋଲି ପୃଥିବୀର ସବୁ ଅଞ୍ଚଳର ପଣ୍ଡିତମାନେ ଏକମତ । କିନ୍ତୁ ସାକ୍ଷରତା ହେଉ ବା ପ୍ରାଇମେରୀ ଶିକ୍ଷା ହେଉ, ଏ କ୍ଷେତ୍ରରେ ଆମର ଯେପରି ତତ୍ପରତା ରହିବା ଉଚିତ, ତାହା ହେଉନାହିଁ ।

ଇସ୍ତାହାର : ଆପଣ ସାଧନା ଓ ନିଷ୍ଠାବଳରେ ଉଭୟ ଓଡ଼ିଆ ସାହିତ୍ୟ ଓ ଭାଷା ସମେତ ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ବହୁ ଉଲ୍ଲେଖନୀୟ କାର୍ଯ୍ୟ

କରିଛନ୍ତି । ତେବେ ବର୍ତ୍ତମାନର ଏ ପରିଣତ ବୟସରେ ଆପଣଙ୍କ ଆଗାମୀ ପରିକଳ୍ପନା ବିଷୟରେ କିଛି କୁହନ୍ତୁ ।

ଡ଼. ପଟ୍ଟନାୟକ : ଆଗାମୀ ଦିନ ତ ଅନିଶ୍ଚିତ । ସେ ବିଷୟରେ ଅଧିକ କ'ଣ ବା କହିବି । ତଥାପି ଲେଖାପଢ଼ାରେ ସମୟ ବିତାଇବା ପାଇଁ ମୋର ଭବିଷ୍ୟତ ପରିକଳ୍ପନା । ଓଡ଼ିଆ ଲେଖା ମୁଁ ପ୍ରାୟ ଛାଡ଼ିଦେଇଥିଲି । ଅବଶ୍ୟ ଅଶ୍ରଦ୍ଧା ହେତୁ ନୁହେଁ, ସମୟର ଅଭାବରୁ ଦୀର୍ଘ ୩୮ ବର୍ଷ କାଳ ଓଡ଼ିଶା ବାହାରେ ରହିଥିବାରୁ ଅନ୍ୟାନ୍ୟ ବହୁ କାର୍ଯ୍ୟ ମଧ୍ୟରେ ଓଡ଼ିଆରେ କିଛି ଲେଖାଲେଖି କରିବାର ଅବକାଶ ପାଇନାହିଁ । ଏବେ ଓଡ଼ିଆରେ କିଛି ଲେଖାଲେଖି କରିବା ମୋର ଇଚ୍ଛା । ଏହା କେତେଦୂର ସଫଳ ହେବ ମୁଁ ଜାଣିନାହିଁ ।

(ବ୍ରହ୍ମପୁରଠାରେ ଅନୁଷ୍ଠିତ ୧୫ତମ ଅଖିଳ ଭାରତ ସମାଜ ବିଜ୍ଞାନ କଂଗ୍ରେସ ଅଧିବେଶନରେ ତାଙ୍କ ସହିତ ମିଶିବାର ଏହି ପ୍ରଶ୍ନକର୍ତ୍ତାଙ୍କୁ ସୁଯୋଗ ମିଳିଥିଲା ।)



# ଓଭୋକନା

ଆମ ଓଡ଼ିଆରେ କଥାଟିଏ ଅଛି, ହବ ତ ହବ ସ୍ୱେଚ୍ଛନା ନହେଲେ ଯୋଉ ଖଗଖିଆ ବଇଦନାଥେ ସେଇ ଖଗଖିଆ ବଇଦନାଥେ । ଖଗଖିଆ ବଇଦନାଥଙ୍କ ମନରେ ଭୋବନା ହବାର ସ୍ୱପ୍ନ ଲିଙ୍ଗରାଜ ମନ୍ଦିରରୁ ଲିଙ୍ଗଙ୍କୁ ଓପାଡ଼ି ତା' ଜାଗାରେ ବସିବା ନୁହଁ, ପୁଣ୍ୟ ମନ୍ଦିରରୁ ଜଗନ୍ନାଥଙ୍କୁ ତଡ଼ି ତାଙ୍କ ଜାଗାକୁ ଦଖଲ କରିବା ନୁହଁ କମ୍ବା ରାଜମହଲ କ ଲାଲକାଲାଟେ ବସି ଆପଣାକୁ ଭୋବନା ବୋଲେଇବା ନୁହଁ । ଆଜ ଯୋଉମାନେ ଖଗଖିଆ ବଇଦନାଥଙ୍କ ନାଁରେ ରାଷ୍ଟ୍ରପତି ଭବନ ଦଖଲ କରିବାକୁ ଚାହାଁନ୍ତି, ସେମାନେ ଖଗଖିଆ ବଇଦନାଥଙ୍କ ଜାଗାରେ ଆପଣାକୁ ଭୋବନା ଜାହିର କରିବାକୁ ଚାହାଁନ୍ତି । ବଇଦନାଥେ ଯୋଉ ଖଗଖିଆକୁ ସେଇ ଖଗଖିଆ ।

ଯିଏ ଖଗଖିଆ ବଇଦନାଥେ ସେଇ ସେ ଭୁବନେଶ୍ୱର ଏକଥା ନଜାଣିଲେ ଉପର କଥାଟିର ମର୍ମ ବୁଝିହେବନାହିଁ । ଉଭୟେ ଏକ ପୂଜାର ଯୋଗ୍ୟ । ଉଭୟେ ସ୍ୱର୍ଗକୁ ଯିବାର ଶିଡ଼ି । ଆଉ ଠିକଏ ଗମ୍ଭୀରକୁ ଦେଖିଲେ ହରିହର ହେଉଛନ୍ତି ଏକ ଆତ୍ମା । ସେଇଥିପାଇଁ ଭୁବନେଶ୍ୱର ହେଉଛି ହରିହର କ୍ଷେତ୍ର, ଜଗନ୍ନାଥ ଶିବ ବେଶ ପିନ୍ଧନ୍ତି । ପୁଣି ମହାକାଳ ସାଙ୍ଗକୁ ମହାକାଳୀ । ବିମଳାଙ୍କଠାରେ ସମର୍ପଣ ନୋହିଲେ ଜଗନ୍ନାଥଙ୍କ ଭୋଗ ମହାପ୍ରସାଦ ହୁଏନାହିଁ । ଶ୍ରୀକ୍ଷେତ୍ରେସୁ ଜଗନ୍ନାଥ ସ୍ୱୟଂ ଦକ୍ଷିଣ କାଳିକା । ଯିଏ ଜଗନ୍ନାଥ, ସେଇ ଭୁବନେଶ୍ୱର, ପୁଣି ସେଇ ମହାକାଳୀ । ଦେହ ଭିନ୍ନ ଭିନ୍ନ ହେଲେ ମଧ୍ୟ ଆତ୍ମା ଏକ ।

ଯିଏ ବିଷ୍ଣୁଙ୍କୁ ପୂଜାକଲେ ସିଏ ହେଲେ ବୈଷ୍ଣବ । ଯିଏ ଶିବଙ୍କୁ ପୂଜାକଲେ ସିଏ ବୋଲେଇଲେ ଶୈବ । ଯିଏ ଶକ୍ତି ପୂଜକ ସିଏ ହେଲେ ଶାକ୍ତ । ଯିଏ ବୁଦ୍ଧଙ୍କୁ କମ୍ବା ମହାବୀର ଜୀନଙ୍କୁ ମୁକ୍ତିର ବାଟ ମାନିଲେ ସିଏ ହେଲେ ବୌଦ୍ଧ କମ୍ବା ଜୈନ । ଯୋଉମାନେ ଗୁରୁବାଣୀକୁ ମୁଖ୍ୟ ମାନିଲେ ସେଇ ଶିଷ୍ୟମାନେ ହେଲେ ଶିଖ । ଯିଏ ଆଲ୍ଲାଙ୍କୁ ପୂଜାକଲେ ସିଏ ହେଲେ ମୁସଲମାନ । ଆଉ ଯିଏ ଯିଶୁଙ୍କୁ ମୁକ୍ତିର ବାଟ ମାନିଲେ ସିଏ ହେଲେ

ଖ୍ରୀଷ୍ଟିଆନ । ସେଇ ଏକା କଥା । ବାଟ ଭିନ୍ନ କିନ୍ତୁ ପହଞ୍ଚିବା ଜାଗା ଗୋଟିଏ । ମରଣ ଧର୍ମ, ଗରିବ, ବଡ଼ଲୋକ, ବୈଷ୍ଣବ, ଶୈବ ସମସ୍ତଙ୍କୁ ସମାନ କରିଦିଏ । ସଭିଏଁ ମାଟି, ପାଣି, ଆଲୁଅ, ପବନ ଆଉ ଶୂନ୍ୟରେ ଲୀନ ହୋଇଯାଆନ୍ତି । ହିନ୍ଦୁ, ମୁସଲମାନ, ଶୈବ, ଶାକ୍ତ ସମସ୍ତେ ସେଇ ଏକାବାଟର ଯାତ୍ରୀ । ଜନ୍ମ ହେଲେ ମରଣ ଧ୍ରୁବ । ମତ ଅଲଗା, ପନ୍ଥ ଅଲଗା ହେଲେ ବି ଜନ୍ମ-ମରଣରେ ସଭିଏଁ ଏକ ।

ଯେତେବେଳେ ମୂର୍ତ୍ତିପୂଜା ବିରୁଦ୍ଧରେ ଖୁବ୍‌ ଅଭିଯାନ ଚାଲିଥିଲା, ସେତିକିବେଳେ ରାମକୃଷ୍ଣ ପରମହଂସ କାଳୀମୂର୍ତ୍ତିଙ୍କ ସାଙ୍ଗରେ କଥାବାର୍ତ୍ତା କରୁଥିଲେ । କଥା ଅଛି ଯେ ସେ ଥରେ ରାଜା ରାମମୋହନଙ୍କୁ ସାଙ୍ଗରେ ନେଇ କାଳୀ ମନ୍ଦିରକୁ ଗଲେ । ଆଣ୍ଠେଇପଡ଼ି ମୁଣ୍ଡିଆ ମାରି ପଛକୁ ଫେରି-ଚାହିଁଲେ ତ ମୂର୍ତ୍ତିପୂଜାବିରୋଧୀ ରାଜା ରାମମୋହନ ସିଧା ଛିଡ଼ାହୋଇଛନ୍ତି । ରାମକୃଷ୍ଣ ପଚାରିଲେ, ହାଁରେ, ତମେ ବ୍ରାହ୍ମମାନେ ଯଦି ବିଶ୍ୱାସ କର ଈଶ୍ୱର ସର୍ବବ୍ୟାପୀ, ତେବେ କ'ଣ ଈଶ୍ୱର ଏଇ ପଥରମୂର୍ତ୍ତି ଛଡ଼ା ଆଉ ସବୁ ଜାଗାରେ ଅଛନ୍ତି ? ରାମମୋହନଙ୍କ ମୁହଁରେ ଜବାବ ଫୁଟିଲା ନାହିଁ । ଯେଉଁମାନେ ରାମଲାଲଙ୍କୁ ସ୍ୱୟଂ ଭଗବାନ ବୋଲି ମାନନ୍ତି ସେମାନେ ତାଙ୍କୁ କ'ଣ କେବଳ ରାମଚରିତ ମାନସରେ ପଢ଼ୁଥିବା ହିନ୍ଦୀଭାଷୀଙ୍କର ଦେବତା ବୋଲି ମାନିବେ ? ରାମ ଯଦି ଭଗବାନଙ୍କ ଅବତାର ଆଉ ସର୍ବଭୂତରେ ତାଙ୍କର ଅବସ୍ଥାନ, ତେବେ ସିଏ ଖାଲି ସଂକୀର୍ଣ୍ଣ କରସେବକଙ୍କ ଦେବତା ହେବେ କପରି ? ହିନ୍ଦୁ ରାଜ୍ୟର ସମୂହ ଦେବତା ହେଲେ ତ ଘଟେଘଟେ ତାଙ୍କର ବିହାର । କିଏ ମାନନ୍ତୁ ନ ମାନନ୍ତୁ ଅନ୍ତତଃ ରାମ ବିଶ୍ୱାସୀମାନେ ଏକଥା ମାନିବା ଉଚିତ । ସେମିତି କିଛି ଲୋକେ ଅଛନ୍ତି ଯିଏ ବିଶ୍ୱାସ କରନ୍ତି, ଜଗନ୍ନାଥ ଯେ ଷୋଳକଳା, ତହୁଁ କଳାଏ ନନ୍ଦବଳା; କଳାକୁ ଷୋଳକଳା କରି, ଗୋପେ ବିହରେ ନରହରି । ଏ କଥା ମାନୁଥିବା ଲୋକ କେମିତି ବିଶ୍ୱାସ କରିବ ଯେ କୃଷ୍ଣ ବା ଜଗନ୍ନାଥ ଏକ ସଂକୀର୍ଣ୍ଣ ଗୋଷ୍ଠୀର ଦେବତା ?

ହିନ୍ଦୁ ଧର୍ମ ମତ ଅନୁସାରେ, ଏକ ସଦ୍‌ବିପ୍ରା ବହୁଧା ବଦନ୍ତି, ସେଇ ଏକ ଦେବତା ବହୁ ନାମରେ ବିଦିତ । ଏଇ କଥାକୁ ଧରିଲେ ସହଜେ ବୁଝିହେବ

ଯେ ରାମ, କୃଷ୍ଣ, ଦୁର୍ଗା, କାଳୀ, ଜଗନ୍ନାଥ, ଭୁବନେଶ୍ୱର, ଆଲ୍ଲା, ଯିଶୁ ଯୋଉ ନାଁରେ ଡାକଲେ ମଧ୍ୟ ଆକାଶରୁ ପଡୁଥିବା ସବୁ ପାଣି ସମୁଦ୍ରରେ ସମେଇଲା ପରି ସବୁ ଡାକ ସେଇ ଗୋଟିଏ ଦେବତାଙ୍କ ପାଖରେ ପହଞ୍ଚେ ।

ହିନ୍ଦୁ, ବୌଦ୍ଧ, ଶିଖଙ୍କ ସାଙ୍ଗକୁ ମୁସଲମାନ, ଖ୍ରୀଷ୍ଟାନ ମଧ୍ୟ ଭାଇ ଭାଇ, ଗୋଟିଏ ଭାଇ ଆଉ ଗୋଟିଏ ଭାଇକୁ ମାରି ଆପଣା ଅଧିକାର ସାବ୍ୟସ୍ତ କରିବସିଲେ ଭାଇ ମରଣର କଳଙ୍କ ଚିହ୍ନ ଆପଣା କପାଳରେ ଟିକା ହେବା ସାର ହେବ । ବଇଦ୍ଧନାଥେ ନ ଡୋବନା ହେବେନାହିଁ । ଜଗତେ କେବଳ, ଜନେ ହସିବେ ଏହା ତହୁଁ ଫଳ ।



# ଟେଲିଫୋନ

ନୂଆବର୍ଷର ଶୁଭେଚ୍ଛା ଜଣେଇବା ପାଇଁ ଡିସେମ୍ବର ୩୧ ତାରିଖ ରାତି ବାରଟାବେଳକୁ ଟେଲିଫୋନ ଉଠେଇ ଶୁଣେ ତ ଘୋରଶବ୍ଦ କିଛି ନାହିଁ, ଯେତେ ଖଟଖଟ, ଧଡ଼ଧଡ଼, କଚଡ଼ାକଚଡ଼ କଲେ ବି ଶବ୍ଦ ବାହାରିବାକୁ ନାରାଜ । ସାଙ୍ଗମାନେ କ'ଣ ବୁଝିବେ ? ଏଇତ ସେଦିନ ଝିଅର ଜନ୍ମଦିନ ଥିଲା । ଆମ ଟେଲିଫୋନ ମଲା । ହେଲେ ସମସ୍ତଙ୍କର ଧାରଣା ଯେ, ଆମେ ଟେଲିଫୋନ ତଳକୁ କାଢ଼ିଦେଇଛୁ କିମ୍ବା ଇଚ୍ଛାକରି ଉଠାଉନାହୁଁ । ଜଣେ କହିଲେ ଆପଣଙ୍କ ଟେଲିଫୋନ ସେ ଦିନକଯାକ ବ୍ୟସ୍ତ । ଯେତେବେଳେ ଉଠେଇଲେ ଏନ୍‌ଗେଜଡ଼୍ । ଝିଅ ନିଶ୍ଚେ ସାଙ୍ଗମାନଙ୍କ ସାଙ୍ଗରେ କଥା ହେଉଥିବ । ଆମ ଟେଲିଫୋନ୍ ଯେ ଡେଡ଼୍ ସେ ମାନିବାକୁ ରାଜି ନୁହଁନ୍ତି । ଆଉଜଣେ କହିଲେ ଆପଣଙ୍କ ଟେଲିଫୋନ ବାଜୁଚି ତ ବାଜୁଚି । କେହି ଉଠେଇବାକୁ ନାହାଁନ୍ତି । ଆପଣମାନେ କ'ଣ ଝିଅକୁ ନେଇ ପିକ୍‌ନିକ୍‌କୁ ଯାଇଥିଲେ ? ନାଇଁ ଆଜ୍ଞା, ଆମେ ତ ଘରେ ଅଛୁ । ଟେଲିଫୋନ୍ ଆଉ କେଉଁଠି ବାଜୁଥିବ । ଆମ ଟେଲିଫୋନ ମଲାପରେ ପରି ସଂପୂର୍ଣ୍ଣ ମଲା ।

ଏଇ ଭାବନାରେ ଅଧଘଣ୍ଟାଏ ଯେ ବିତିଗଲାଣି ମୋର ହେଉ ନାହିଁ । ଝିଅ ହଠାତ୍ ଆନନ୍ଦରେ ପାଟିକରି ଉଠିଲା—ବାପା, ଟେଲିଫୋନ୍‌ରେ ଶବ୍ଦ ହେଲାଣି । ଆନନ୍ଦରେ ଡିଆଁଟାଏ ମାରି ମୁଁ ନମ୍ବର ଟିପିଲି । ସେପଟୁ ଟେଲିଫୋନ ଉଠେଇବାର ଶବ୍ଦ ହେଲା । ହାଲୋ, ଶୁଣ, ନବବର୍ଷର ଶୁଭେଚ୍ଛା । ସେପଟୁ ଜବାବ ଆସୁଥାଏ ହାଲୋ, ହାଲୋ, ହାଲୋ, ହାଲୋ । ଝିଅ କହିଲା, ବାପା, ଟେଲିଫୋନ ଏକପଟିଆ ହୋଇଯାଇଚି । ସେମାନଙ୍କୁ ଆମ କଥା ଶୁଭୁନାହିଁ । ଦଶ ପନ୍ଦର ମିନିଟ୍ ଚେଷ୍ଟା କଲାପରେ ହାଲି ଛାଡ଼ି-ଦେଲି । ଯାଇ ବିଛଣା ଧରିଲି ।

ସକାଳୁ ଉଠି ଭାବିଲି ଜାନୁଆରି ପହିଲା । ହୁଏତ ଟେଲିଫୋନ ଠିକ୍ ହୋଇଥିବ । ଝିଅକୁ ପଚାରିଲି ଟେଲିଫୋନ ଅବସ୍ଥା କ'ଣ ? ଶିଖଣ୍ଡୀ ଅବସ୍ଥା । ନା ଜୀଅନ୍ତା ନା ମଲା । ଖାଲି ସଁ ସଁ ଶବ୍ଦ । ଉଠେଇ ଦେଖିଲି । ନାଃ ଆଉ ହବନି । ନୂଆବର୍ଷର ଆରମ୍ଭ କିଛି ଭଲନୁହେଁ । ପଡ଼ିଶାରେ ଜଣେ ଶିଷ୍ଟା ଡାକ୍ତର ଥିଲେ । ତାଙ୍କ ଘରୁ ଗୋଟେ କମ୍ପ୍ଲେନ୍ କଲେ ହୁଏତ କର୍ତ୍ତାମାନଙ୍କର ଦୃଷ୍ଟି ପଡ଼ିବ । ଡାକ୍ତରବାବୁ ମୋତେ ଦେଖି ମୁରୁକି ହସି କହିଲେ, ଆମେ ତ ଫାଟିଫୁଟି ଗଲୁଣି । ଆପଣଙ୍କ ହାତ ଲଗିଲେ ଅବା କଅଣ ହେବ । ମୁଁ ବୁଝିପାରିଲି ନାହିଁ । ଡାକ୍ତରବାବୁ ହାତଠାରି ଟେଲିଫୋନ୍ ଦେଖେଇଦେଲେ । ମୁଁ ଟେଲିଫୋନ୍ ଉଠେଇଲି । ସେପଟୁ କଥା ଭାସି-ଆସୁଚି, ବଡ଼ ବହୁଜୀ ତବୟତ କୈସୀ ହୈ, ଝୁମର କୋ ଭେଜୁଁ ? ହ'ଗୁରିଥର ଖଟଖଟ କଲାପରେ କଥାର ସୁଅରେ ବନ୍ଧ ପଡ଼ିଲା ନାହିଁ । ଡାକ୍ତରବାବୁ କହିଲେ ସକାଳ ପହରୁ ଏଇଆ ଚାଲିଛି । କୋଉଠି ତାରକୁ ତାର ଖଞ୍ଜି ହୋଇଯାଇଛି । ବ୍ୟସ୍ତ ହୋଇଉଠିଲି । କିଛି ଗୋଟାଏ କରିବାକୁ ହେବ ।

ପାଞ୍ଚଘର ଛାଡ଼ି ଜଣେ ଶିଷ୍ଟା ଲୋକଙ୍କର ଫୋନ୍ ଅଛି । ତାଙ୍କ ଘରୁ କମ୍ପ୍ଲେନ୍‌କୁ ଫୋନ୍ କଲି । ଆପଣଙ୍କ ଟେଲିଫୋନ୍ ନମ୍ବର ? ମିଠା ଗଳାରେ ପ୍ରଶ୍ନ । ତିନ ଦୁଇ ଛ ଛ ଛ । ଆପଣ କେଉଁ ନମ୍ବରରୁ ଟେଲିଫୋନ୍ କରୁଛନ୍ତି । ପାଞ୍ଚ ଚାରି ଏକ ତିନ ଆଠ । ଆପଣଙ୍କ ନମ୍ବର ହେଲା ଆମି ପାଞ୍ଚଶହଦଶ । ଆଜ୍ଞା ନମ୍ବର ନେଇ କ'ଣ କରିବି । ଆଜ ନୂଆ ବର୍ଷ । ଟେଲିଫୋନ୍‌ଟା ଠିକ୍ ହେଲେ··· । କମ୍ପ୍ଲେନ ଦରଜ କରିବା ଆମ କାମ । ଯେତେ ଶୀଘ୍ର ସମ୍ଭବ ଆପଣଙ୍କ ଅଭିଯୋଗ ଯଥାସ୍ଥାନକୁ ପଠେଇ ଦିଆଯିବ । ନୂଆବର୍ଷର ଶୁଭେଚ୍ଛା । କ୍ଲିକ୍ ।

ମନ ତ ଲାଗିଛି । ଉପରଓଳି ପୁଣି ଡାକ୍ତରବାବୁଙ୍କ ଘରକୁ ଗଲି । ଟେଲିଫୋନ କାମ କରୁଥାଏ । କମ୍ପ୍ଲେନ୍ ନମ୍ବର ଡାକିଲି । ଉତ୍ତର ମିଳିଲା । ଆପଣ କଉରେ ଅଛନ୍ତି । ଟିକିଏ ଅପେକ୍ଷା କରନ୍ତୁ । ପ୍ରତି ମିନଟ୍‌ରେ ସେଇ କଥାର ପୁନରାବୃତ୍ତି । ସାତ ଆଠ ଥର ଏଇ କଥାର ପୁନରାବୃତ୍ତି

ଶୁଣିଲାପରେ ରାଗରେ ରିସିଭରଟା କଚାଡ଼ିଦେଲି । ପୁଣି ରାଗ ଥଣ୍ଡା କରି ଆଉଥରେ କମ୍ପଲେନ୍ ନମ୍ବର ଡାକେ ତ ଜବାବ ମିଳିଲା ଆପଣ ଯେଉଁ ନମ୍ବର ଡାକୁଛନ୍ତି ସେପରି ନମ୍ବର ନାହିଁ । କି ଆଶ୍ଚର୍ଯ୍ୟ ! କମ୍ପଲେନ୍ ନମ୍ବର ଗାଏବ ? ସଂସ୍ଥାର ବ୍ୟବସ୍ଥାରେ ଯେଉଁ ପ୍ରଳୟଙ୍କରୀ ରିଭୋଲ୍ୟୁସନ୍ ଏହା ତାହାରି ପରିଣାମ । ଟେଲିଫୋନ୍ ଜିନ୍ଦାବାଦ । ଟେଲିଫୋନ୍‌ରେ ଯେଉଁ ବନ୍ଧୁମାନଙ୍କୁ ମୁଁ ନ ପହଞ୍ଚିପାରିଲି ସେ ସମସ୍ତଙ୍କୁ ନବବର୍ଷର ଶୁଭେଚ୍ଛା ।



# ଆଦିବାସୀ ଶିକ୍ଷା

ଆଦିବାସୀ ଆମ ଦେଶର ଆଦିମ ଅଧିବାସୀ । ଆର୍ଯ୍ୟମାନେ ଆସିବାର ବହୁ ପୂର୍ବରୁ ସେମାନେ ଏ ଦେଶରେ ଥିଲେ । ଆର୍ଯ୍ୟଙ୍କ ଆଗରୁ ଦ୍ରାବିଡ଼ମାନେ ଏ ଦେଶକୁ ଆସିଲାବେଳେ ଆଦିବାସୀମାନଙ୍କ ସହିତ ସେମାନଙ୍କର ପ୍ରଥମ ସମ୍ପର୍କ ହୁଏ । ଆର୍ଯ୍ୟମାନେ ଲଢ଼େଇ ପରି ଭାରତକୁ ଆସିବାରେ ଦ୍ରାବିଡ଼ମାନେ ପେଲିହୋଇ ଦକ୍ଷିଣକୁ ଗଲେ ଆଉ ଆଦିବାସୀମାନେ ପାହାଡ଼, ବଣଜଙ୍ଗଲକୁ ଗଲେ । ଏହି ପ୍ରକ୍ରିୟାରେ କେତେ ଯେ ଆଦିବାସୀ ଲୋପ ପାଇଗଲେ ତା'ର ସୁମାରି ନାହିଁ । କେତେ ଜାତିଆଣ ସମାଜର ସବୁଠାରୁ ତଳ ସ୍ତରରେ ମିଶିଗଲେ । ଆଉ କେତେ ଜାତିଆଣ ସମାଜର ସଙ୍ଗରେ ରହିଲେ । ଏମାନଙ୍କୁ କ୍ରମେ ଏକ ଅଚଳ ଦୁନିଆର ଦୁର୍ବଳ ପ୍ରତିନିଧି ବୋଲି ମାନିନିଆଗଲା । ଏମାନଙ୍କ ଦୁନିଆକୁ ଅଚଳ କଲା କିଏ ? ଏମାନଙ୍କୁ ଦୁର୍ବଳ କଲା କିଏ ? ୨୦୦ ବର୍ଷରୁ କମ୍ ସମୟରେ ଏହି ଆଦିବାସୀମାନେ ପୃଥିବୀର ଅଧେ ଜାଗାର ଅଧିକାରୀ ଥିଲେ । ଏମାନେ ପୃଥିବୀର ଲୋକସଂଖ୍ୟାର ଶତକଡ଼ା ୨୦ ଭାଗ ଥିଲେ । ୧୮୦୦ରୁ ୧୯୫୦ ମଧ୍ୟରେ ଶିଳ୍ପ ବିକଶିତ ରାଜ୍ୟମାନଙ୍କର ବିସ୍ତାର ଫଳରେ ସେମାନଙ୍କ ଭିତରୁ ପାଞ୍ଚ କୋଟି ଲୋକ ମରିଗଲେ । ଏହାପରେ ଦେଢ଼ଶ ବର୍ଷ ଯାଏ ପ୍ରତିବର୍ଷ ଦୁଇଶହ ପଚାଶ ହଜାର ଲୋକ ମଲେ । ଏବେ ବି ବିକାଶ ନାଁରେ ସେମାନଙ୍କୁ ଜମି, ପ୍ରାକୃତିକ ସମ୍ପଦରୁ ବଞ୍ଚିତ କରି ଯେପରି ଭାବରେ ମରଣ ମୁହଁକୁ ଠେଲି ଦିଆଯାଉଛି ଦେଖିଲେ ଲୁହ ତ ନୁହେଁ ଆଖିରୁ ରକ୍ତ ଝରିବ ।

**ସେଉଁଠି ଆଦିବାସୀମାନଙ୍କ ସ୍ଥିତି ଏତେ ହତାଦର, ସେଥିରେ ସେମାନଙ୍କ ଭାଷା, ସଂସ୍କୃତି ପ୍ରଶ୍ନ ଉଠୁଛି କେଉଁଠି ?** ଅନେକଙ୍କ ମତରେ ଆଦିବାସୀମାନଙ୍କର ଭାଷା ନାହିଁ । ଯାହା ଅଛି ତାହା ଉପଭାଷା । ଆଉ କେତେକଙ୍କ ମତରେ ଆଦିବାସୀ ଭାଷାର ବ୍ୟାକରଣ ନାହିଁ । ସଉରା ଭାଷା ବିଷୟରେ କହିବାକୁ ଯାଇ ଜଣେ ପଣ୍ଡିତ କହିଥିଲେ ଯେ ଏଥିରେ ମାତ୍ର ୭୦୦ଟି ଶବ୍ଦ ଅଛି । ଇଏ ହେଲା ନମୁନା । ଆଦିବାସୀ ସଂସ୍କୃତି ଯେ ଆମଠାରୁ ନ୍ୟୂନ େ

ବିଷୟରେ କାହାର ସନ୍ଦେହ ଥିଲାପରି ମନେହୁଏନାହିଁ । ଏପରି ଅବସ୍ଥାରେ ଆଦିବାସୀମାନଙ୍କର ଯେ ଆମ ବିକଶିତ ଭାଷା ଶିଖିବା ଦରକାର ଏ ବିଷୟରେ ଖାଲି ପଣ୍ଡିତ ନୁହନ୍ତି ସାଧାରଣ ଶିକ୍ଷିତ ଲୋକେ ମଧ୍ୟ ଏକମତ ।

ଆଦିବାସୀମାନଙ୍କୁ ଶାସନ କରିବା ପାଇଁ କିମ୍ବା ସେମାନଙ୍କୁ ଆମ ଭାଷା ଶିଖାଇବା ପାଇଁ ଯେ ଆମକୁ ତାଙ୍କ ଭାଷା ଜାଣିବା ଦରକାର ଏ ବିଷୟରେ କାହାର ମୁଣ୍ଡବିଥା ନାହିଁ । ଓଡ଼ିଶାରେ ଓଣଓଡ଼ିଆ ଅଫିସର ଓ ଇଂରାଜୀମସ୍ତ ଓଡ଼ିଆ ଅଫିସରମାନେ ଶାସନ କ୍ଷେତ୍ରରେ ଓଡ଼ିଆ ବ୍ୟବହାର କରିବାକୁ ଅମଙ୍ଗ ହେଉଥିବାବେଳେ, ଆଦିବାସୀ ଭାଷା ଶିଖିବା ସେମାନଙ୍କଠାରୁ ଆଶା କରିବା ଅଯଥାର୍ଥ । ଆଜିକାଲି ବି ଆଦିବାସୀ ଅଞ୍ଚଳରେ ନିଯୁକ୍ତିକୁ ଦଣ୍ଡ ରୂପେ ଗଣାଯାଉଛି । ଏହିପରି ଅଫିସରମାନଙ୍କଠାରୁ ଆଦିବାସୀ ଭାଷା, ସଂସ୍କୃତି ପ୍ରତି ଅନୁରାଗ ଆଶା କରିବା ବିଡ଼ମ୍ବନା ।

ସ୍ୱତନ୍ତ୍ର ଆଦିବାସୀ ଅଞ୍ଚଳ ଚିହ୍ନଟ କରି ଏ ଅଞ୍ଚଳର ବିକାଶ ପାଇଁ କୋଟି କୋଟି ଟଙ୍କାର ବରାଦ କରାଯାଇଥିଲେ ହେଁ ବିକାଶର ମୂଳକଥା ଯେ ସଞ୍ଚାର ଏ କଥା ସ୍ୱୀକାର କରାନଯାଇଥିବାରୁ ବିକାଶ ପ୍ରକ୍ରିୟାରେ ଆଦିବାସୀ ସାଧାରଣଙ୍କର ଯୋଗଦାନ ନାହିଁ । ତେଣୁ ବିକାଶ ପାଇଁ ବରାଦ ଟଙ୍କାରୁ ଆଦିବାସୀଙ୍କ ପାଖରେ ଟଙ୍କାରେ ୧୦ ପଇସା ପହଞ୍ଚିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଓଡ଼ିଆ ପିଲାଙ୍କୁ ଆଦିବାସୀ ଭାଷା ଶିଖେଇ ଓ ଆଦିବାସୀମାନଙ୍କୁ ଓଡ଼ିଆ ଭାଷା ଶିଖେଇ ଆଦିବାସୀଙ୍କର ପ୍ରାଥମିକ ଶିକ୍ଷା ପାଇଁ ଶିକ୍ଷକ ତିଆରି କରିବା ପାଇଁ କୌଣସି ଯୋଜନାବଦ୍ଧ ଉଦ୍ୟମ ଏଯାଏ ହୋଇପାରିଲା ନାହିଁ । ଓଡ଼ିଆ ପିଲାଙ୍କୁ ଇଂରାଜୀ ବା ହିନ୍ଦୀ ଭାଷାରେ ପ୍ରାଥମିକ ସାକ୍ଷରତା ଦେବାର ହାସ୍ୟାସ୍ପଦ ପ୍ରଚେଷ୍ଟା ପରି ଆଦିବାସୀ ପିଲାଙ୍କୁ ଓଡ଼ିଆ ଭାଷାରେ ପ୍ରାଥମିକ ସାକ୍ଷରତା ଦେବାର ପ୍ରଚେଷ୍ଟା ସେହିପରି ହାସ୍ୟାସ୍ପଦ ।

ସାକ୍ଷରତା ହେଉ ବା ପ୍ରାଥମିକ ଶିକ୍ଷା ହେଉ, ମାତୃଭାଷା ଯେ ଏହାର ବାହନ ହେବା ଉଚିତ ଏ ବିଷୟରେ ଶିକ୍ଷାବିତ୍‌ମାନଙ୍କ ମଧ୍ୟରେ ଦ୍ୱିମତ ନାହିଁ । ବିଭିନ୍ନ ପ୍ରଦେଶରେ ମୁଖ୍ୟ ପ୍ରାଦେଶିକ ଭାଷାଗୁଡ଼ିକ ଉଚ୍ଚଶିକ୍ଷା, ଶାସନ ଓ ସଞ୍ଚାରର ମାଧ୍ୟମ ହୋଇଥିବାରୁ ସେହି ସେହି ଅଞ୍ଚଳର ଆର୍ଥିକ

ଓ ରାଜନୈତିକ ବିକାଶରେ ଭାଗ ନେବାକୁ ହେଲେ ସେହି ସେହି ଆଞ୍ଚଳିକ ଭାଷାରେ ଶୀଘ୍ରାତିଶୀଘ୍ର ଦକ୍ଷତା ହାସଲ କରିବା ଯେ ପ୍ରୟୋଜନ ଏ ବିଷୟରେ କାହାରି ସନ୍ଦେହ ରହିବା ଉଚିତ ନୁହେଁ । ଏ ଦୁଇଟି କଥାକୁ ଆଖି ଆଗରେ ରଖି ସାକ୍ଷରତା ତଥା ପ୍ରାଥମିକ ଶିକ୍ଷା କଥା ବିଚାରକଲେ ଦ୍ୱିଭାଷିକତା ଛଡ଼ା ଯେ ଗତ୍ୟନ୍ତର ନାହିଁ ଏ କଥା ସ୍ପଷ୍ଟ ହେବ । ଅଥଚ ନୀତି ହିସାବରେ ଆଦିବାସୀ ଅଞ୍ଚଳ ପାଇଁ ସାକ୍ଷରତା କିମ୍ବା ପ୍ରାଥମିକ ଶିକ୍ଷା ପାଇଁ ଦ୍ୱିଭାଷିକତାକୁ ସରକାର ସ୍ୱୀକୃତି ଦେଇନାହାନ୍ତି । ଏ ବିଷୟରେ କେଉଁଠି କେମିତି କାଁ ଭାଁ ପରୀକ୍ଷା ନିରୀକ୍ଷା ଚାଲିଛି । ଏହା ସମୁଦ୍ରକୁ ଶଙ୍ଖେ ପାଣି । ଗତ ଚାଳିଶ ବର୍ଷରେ କୋରାପୁଟ ଜିଲ୍ଲାରୁ ଯେ ଚାରିଜଣ ଗ୍ରାଜୁଏଟ୍ ବାହାରିନାହାନ୍ତି ଏହା ତାହାରି ପରିଣାମ ।

ସାକ୍ଷରତା ଓ ପ୍ରାଥମିକ ଶିକ୍ଷା ଉଭୟ କ୍ଷେତ୍ରରେ ମାତୃଭାଷାରୁ ଆରମ୍ଭ କରି ଆଞ୍ଚଳିକ ଭାଷାରେ ଦକ୍ଷତା ଅର୍ଜନ କରିବା ଲକ୍ଷ୍ୟ ହେବା ଉଚିତ । ପଢ଼ିବା ଓ ଲେଖିବା ଶିଖୁଥିବା ଭାଷାକୁ କହି ନ ଜାଣୁଥିଲେ ଶିକ୍ଷାର୍ଥୀକୁ ଦ୍ୱିଗୁଣ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ । ସେଇଥିପାଇଁ କହୁଥିବା ଭାଷାରେ ଲେଖାପଢ଼ା ଆରମ୍ଭ କରି ଆଞ୍ଚଳିକ ଭାଷାକୁ କହିବାକୁ ଶିଖାଇ ତା'ପରେ ଲେଖାପଢ଼ା ଶିଖେଇବା ଭାଷା ଶିକ୍ଷା କ୍ଷେତ୍ରରେ ଗୃହୀତ ପ୍ରକ୍ରିୟା । ପ୍ରଥମ ଶ୍ରେଣୀରେ ଶତକଡ଼ା ୮୦ ଭାଗ ସମୟ ମାତୃଭାଷା ଲେଖାପଢ଼ା ଶିଖେଇବାରେ ଲଗେଇ ୨୦ ଭାଗ ସମୟ କଥିତ ଆଞ୍ଚଳିକ ଭାଷା ଶିଖାଇବାରେ ଲଗାଇବା ପ୍ରୟୋଜନ । ପରେ ୬୦-୪୦, ୫୦-୫୦, ୩୦ ୭୦ ଓ ୨୦-୮୦ କ୍ରମରେ ସମୟ ମାତୃଭାଷା ଓ ଆଞ୍ଚଳିକ ଭାଷା ମଧ୍ୟରେ ବାଣ୍ଟି ଏପରି ଭାବରେ ଶିକ୍ଷା ଦିଆଯିବ ଯେ ପ୍ରାଥମିକ ଉତ୍ତର ଶିକ୍ଷା ଆଞ୍ଚଳିକ ଭାଷା ମାଧ୍ୟମରେ ଦିଆଗଲେ ଶିକ୍ଷାର୍ଥୀର କୌଣସି ଅସୁବିଧା ହେବନାହିଁ । ପ୍ରୟୋଜନବୋଧ ହେଲେ ମାତୃଭାଷାକୁ ମାଧ୍ୟମିକ ଶିକ୍ଷାରେ ଏକ ବିଷୟ-ରୂପେ ପଢ଼ାଯାଇପାରେ ।

ଯେଉଁମାନେ ମାଧ୍ୟମିକ ଶିକ୍ଷା ଆଦିବାସୀ ଭାଷା ମାଧ୍ୟମରେ ଦେବାକୁ ଦାବି କରୁଛନ୍ତି, ସେମାନେ ଆଦିବାସୀ ସ୍ୱାର୍ଥର ବିରୋଧୀ । ଓଡ଼ିଆ ଭାଷାରେ ମଧ୍ୟ ଏପର୍ଯ୍ୟନ୍ତ ମାଧ୍ୟମିକ କ୍ଷେତ୍ର ପାଇଁ ଉପଯୁକ୍ତ ସଂଖ୍ୟାରେ ପଠନ ସାମଗ୍ରୀ

ଉପଲବ୍ଧ ନୁହେଁ । ଆଦିବାସୀ ଭାଷାମାନଙ୍କରେ ବହି ଓ ଅନ୍ୟାନ୍ୟ ପଠନ ସମଗ୍ରୀ ଅଭାବରେ ସେମାନେ ପଢ଼ା କ୍ଷେତ୍ରରେ ପଛେଇ ଯିବା ସ୍ୱାଭାବିକ । ପ୍ରାଥମିକ ଶିକ୍ଷାରେ ଆଦିବାସୀ ଭାଷାଗୁଡ଼ିକ ପ୍ରତିଷ୍ଠିତ ନୋହିଲେଯାଏ ଏ ବିଷୟରେ ଆଲୋଚନା ନୋହିବା ପ୍ରୟୋଜନ ।

ଆଦିବାସୀ ଭାଷା ପାଇଁ ସ୍ୱତନ୍ତ୍ର ଲିପି ପାଇଁ ବିଭିନ୍ନ ଅଞ୍ଚଳରେ ରାଜନୈତିକ ଆନ୍ଦୋଳନ ମୁଣ୍ଡ ଟେକୁଛି । ଭାରତୀୟ ଭାଷା ସଂସ୍ଥାନରେ ଥିଲାବେଳେ ମୁଁ ଭାରତ ସରକାରଙ୍କର ମତ ନିର୍ଦ୍ଧାରଣ କରାଇଥିଲି ଯେ ଲିପି ନଥିବା ଆଦିବାସୀ ଭାଷାମାନଙ୍କୁ ଆଞ୍ଚଳିକ ଲିପିରେ ଲେଖାଯିବା ଉଚିତ । ଲିପି ପାଇଁ ଆନ୍ଦୋଳନ କରି ଭାଷାର ବିକାଶ ବ୍ୟାହତ କରିବା ଅନୁଚିତ । ସିନ୍ଧି ଭାଷାରେ ନାଗରୀ ଓ ଆରବୀ ଲିପିର ବ୍ୟବହାର ପାଇଁ ଦୁଇ ଦଳଙ୍କ ଭିତରେ କନ୍ଦଳ ଲାଗି ସିନ୍ଧି ଭାଷାର ବହୁତ କ୍ଷତି ହୋଇଛି । ସାନ୍ତାଳୀ ଭାଷା ବର୍ତ୍ତମାନ ଓଡ଼ିଆ, ବଙ୍ଗଳା, ଆସାମୀ, ନାଗରୀ, ରୋମାନ ଓଲଚିକି ଲିପିରେ ଲେଖାଯାଉଛି । ଏତେ ଲିପିରେ ଲେଖାଯାଉଥିଲେ ମଧ୍ୟ ଭାଷା ବିକାଶ ପାଇଁ ଏହାର କୁପ୍ରଭାବ ନାହିଁ । ବରଂ ବିଭିନ୍ନ ରାଜ୍ୟରେ ରହୁଥିବା ସାନ୍ତାଳୀମାନେ ସେହି ସେହି ଅଞ୍ଚଳ ସହିତ ସାଂସ୍କୃତିକ ସମ୍ବନ୍ଧ ବଢ଼େଇବାକୁ ଏହା ସେତୁ । କୋଙ୍କଣି ଭାଷା ମଧ୍ୟ ସେହିପରି ଚାରିଗୋଟି ଲିପିରେ ଲେଖାଯାଇଥାଏ । ଲିପି ଖାଲି କାଗଜ ବା ଧଳା, କଳାପଟା ଉପରେ ସୀମାବଦ୍ଧ ନୁହେଁ । ଟାଇପ୍, ଟେଲିଗ୍ରାଫି, ଟେଲିପ୍ରିଣ୍ଟିଙ୍ଗ୍, କମ୍ପ୍ୟୁଟର ଆଦି କ୍ଷେତ୍ରରେ ଲିପିର ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ରହିଛି । ଆମେ ଆଞ୍ଚଳିକ ଲିପିମାନଙ୍କ ପାଇଁ ଏ ସୁଯୋଗ ନ ଦେଇ ପାରିଥିବାବେଳେ ସ୍ୱତନ୍ତ୍ର ଆଦିବାସୀ ଲିପି ଯେ ୫୦ରୁ ୧୦୦ ବର୍ଷ ଯାଏ ପଛରେ ରହିବ, ଏ ବିଷୟରେ ସନ୍ଦେହ ନାହିଁ । ଯେଉଁମାନେ ରାଜନୈତିକ କାରଣରୁ ଏପରି ଦାବିକୁ ସ୍ୱୀକାର କରୁଛନ୍ତି ସେମାନେ ଆଦିବାସୀମାନଙ୍କର ଘୋର କ୍ଷତି କରୁଛନ୍ତି ।

ସାକ୍ଷରତା ପାଇଁ ସର୍ବନିମ୍ନ ୩୦୦ ଘଣ୍ଟା ଦିଆଯିବ ବୋଲି ଭାରତ ସରକାର ସ୍ଥିର କରିଥିବାବେଳେ ଆମେ ପ୍ରଥମେ ମଣିପୁର ପାଇଁ ସାକ୍ଷରତା ବହି ତିଆରି କରିଥିଲୁ । ସେଇ ବହିର ମୁଖବନ୍ଧରେ ମୁଁ କହିଥିଲି ଯେ ଏଥିରୁ ୭୫ ଘଣ୍ଟା ମୌଖିକ ଅଭ୍ୟାସ ପାଇଁ ରଖାଯିବା ଉଚିତ । ଯେଉଁ ଲୋକଙ୍କ

ମୁହଁରେ ଭାଷା ନାହିଁ, ସେମାନଙ୍କୁ ଆପଣାର ଦାବି ସପକ୍ଷରେ କହିବାକୁ ଶିଖେଇବା ପ୍ରୟୋଜନ । ତାହାହେଲେ ଲେଖାପଢ଼ା ପାଇଁ ଉପଯୁକ୍ତ ବାତାବରଣ ତିଆରିହେବ । ଆଜ ଯେଉଁମାନେ ଆଦିବାସୀଙ୍କ ନାଁରେ ଆଦିବାସୀଙ୍କ ପାଇଁ ଆଦିବାସୀ ଭାଷା ସଂସ୍କୃତି ବିବର୍ଜିତ ଶିକ୍ଷା ପାଇଁ ପଇସାର ବିନବ୍ୟସ୍ଥ କରୁଛନ୍ତି ସେମାନଙ୍କର ଜବାବ୍ ଦେବାର ବେଳ ଆସିଛି । ସେମାନେ କାହୁଲେଖା ନିଜେ ପଢ଼ନ୍ତୁ ।



# ଦିଲ୍ଲୀ (ପଛରୁ ଆଗକୁ)

ଜଣେ ବନ୍ଧୁ କହିଲେ ଦିଲ୍ଲୀରେ ଦି'ପ୍ରକାର ଲୋକ ରହନ୍ତି । ଅଧେ, ଯେଉଁମାନେ ଚଢ଼ିବାକୁ ଚାହାନ୍ତି, ଆଉ ଅଧେ, ଯୋଉମାନଙ୍କ ଉପରେ ସେମାନେ ଚଢ଼ନ୍ତି । ସାମାଜିକ ଶିଢ଼ିରେ ଉପରକୁ ଚଢ଼ିବାକୁ କିଏ ବା ନ ଚାହେଁ ? ତେବେ ଦୁବଳ ଉପରେ ଚଢ଼ିବାକୁ ଯଦି ନୀତି ବା ସାମାଜିକତା ବୋଲି ମାନିନିଆଯାଏ, ତେବେ ସେ ସମାଜର ଗତି କଅଣ ହେବ ଭାବି ଦେଖନ୍ତୁ ।

ମୋ ବୋଉ ପିଲାଦିନେ ଗୋଟିଏ ଗପ କହୁଥିଲା । ଯେତେଥର କହିଲେ ବି ପ୍ରତିଥର ତା' ନୂଆପରି ଶୁଭୁଚି । ଗୋଟିଏ ବ୍ରାହ୍ମଣ ଶାସନ ଥିଲା । ଚାଳ ଉପରେ ଚାଳ ନିର୍ଭର କଲାପରି ଗାଁର ନୀତିନିଷ୍ଠ ସମାଜ ପରସ୍ପର ନିର୍ଭର ଅଥଚ ଆତ୍ମନିର୍ଭର ଥିଲା । ଦିନେ ସକାଳେ ଗୋଟିଏ ଗରିବ ବ୍ରାହ୍ମଣ ହୋମକୁଣ୍ଡ ସଫା କଲାବେଳେ ସୁନା ମୁଣ୍ଡାଏ ପାଇଲା । ନିଶ୍ଚେ ଅନୀତି ହୋଇଚି । ବୁଝି ବୁଝି, ସବା ସାନବୋହୂ ଡରରେ ରାତିରେ ଘରବାହାରକୁ ନଯାଇ ହୋମ କୁଣ୍ଡରେ ପରିସ୍ରା କରିଦେଇଚି । ଠିକିଏ ଥାଥାମାମା । ଶେଷକୁ ଲୋଭ ନୀତିର ମୁଣ୍ଡ ମୋଡ଼ିଲା । ବ୍ରାହ୍ମଣ ବୋହୂକୁ କହିଲା ପ୍ରତିଦିନ ହୋମକୁଣ୍ଡରେ ପରିସ୍ରା କର । ପ୍ରତିଦିନ ସୁନାମୁଣ୍ଡା ମିଳିଲା । କଥା ଦି'କାନରୁ ଚାରିକାନ, ଚାରିକାନରୁ ଛ'କାନ ହେଲା । ଗୋଟିଏ ଗରିବ ପରିବାରକୁ ଛାଡ଼ି ସଭିଏଁ ସେଇଆ କଲେ । ସୁନା ପାଇଲେ । ଶେଷକୁ ଏଇ ଗରିବ ଘରେ କଳି ଲାଗିଲା । ସତରେ ତାଙ୍କ ପୁଣ୍ୟବଳରେ ଗାଁ ବଞ୍ଚିଚି କି ନାହିଁ ପରଖିବା ପାଇଁ ବ୍ରାହ୍ମଣ ବ୍ରାହ୍ମଣୀ ଗାଁ ଛାଡ଼ିଗଲେ । ତା'ପରେ ଆରମ୍ଭ ହେଲା ଶିଢ଼ି ଚଢ଼ିବା ପାଲି । ବଳୁଆ ନିର୍ବଳୁଆଙ୍କ ହୋମକୁଣ୍ଡ ମାଡ଼ିବସିଲେ । ସେଇଥିରୁ କିଏ ଶିଢ଼ି ଭିଡ଼ିନେଲା । ଗାଁରେ ନିଆଁ ଲାଗିଲା । ସବୁ ଜଳିପୋଡ଼ି ପାଉଁଶ ହେଲା । ଇଏ ତ ଦିଲ୍ଲୀ । କାହା ପୁଣ୍ୟରୁ କେତେ ବଞ୍ଚିଚି କହିହେବ ନାହିଁ । ଲୋଭ ଆଉ ଲାଭ, ଉପରକୁ ଚଢ଼ିବାକୁ ଠେଲାପେଲା । ଏହାର ଲଙ୍ଗଳା ରୂପ. ଦିଲ୍ଲୀରେ ହିଁ ଦେଖିବାକୁ ମିଳିବ ।

ଦିଲ୍ଲୀର ପୁରୁଣା ଦରବାର ଆଉ ନୂଆ ଦରବାର ଭିତରେ ପରମ୍ପରାର ଆଧୁନିକୀକରଣ ଖୋଜିବାକୁ ହେବ । ଗୋଟିଏ ଦରବାରର ଛବି ଦେଖନ୍ତୁ । ଜଣେ ବନ୍ଧୁ କହିଲେ, ମୁଁ ଜଣେ ମନ୍ତ୍ରୀଙ୍କୁ ଦେଖିବାକୁ ଯାଇଥିଲି । ମନ୍ତ୍ରୀଙ୍କ ଅଫିସରେ ତାଙ୍କ ପି. ଏ. କହିଲେ ମୁଁ ଟେଲିଫୋନ କରିଦେଉଛି । ଆପଣ ଘରକୁ ଯାଆନ୍ତୁ । ସେଠି କୁମାରଙ୍କ ସାଙ୍ଗରେ ଭେଟିବେ । ମୁଁ ଘରକୁ ଗଲି । କୁମାରଙ୍କୁ ଭେଟିଲି । ଅଧଘଣ୍ଟାଏ ବସିଲି ପରେ ମୁଁ କହିଲି ମତେ ପ୍ଲେନ ଧରିବାକୁ ହେବ । ଶେଷକୁ ସେ ମତେ ଡେକି ପଠେଇଲେ । ମନ୍ତ୍ରୀ ପଚାରିଲେ, ତମେ ଘରକୁ କାହିଁକି ଆସିଲ ? ମୁଁ କହିଲି ଗତକାଲି ଆପଣଙ୍କ ସହ ସାକ୍ଷାତକାର ଥିଲି । ଗତକାଲି ଆପଣ ଶବ ଶୋଭାଯାତ୍ରାରେ ଗଲେ । ପୁରୁଣା ନେତାଙ୍କ ମରଣ ଜାତୀୟ ସଙ୍କଟ । ମୋ' ଦୁର୍ଭାଗ୍ୟକୁ ମୋର ଦେଖାହେବା ଏ ମରଣ ଥିଲି । ଆଜି ଫିବା ବାଟରେ ଆପଣଙ୍କୁ ଭେଟିବାକୁ ଶର୍ମା କହିଲେ । ମନ୍ତ୍ରୀ କହିଲେ ଶର୍ମା ମୋର ପି. ଏ. । ସେ କହିବାକୁ କିଏ ? ତମେ ମୋ ସେକ୍ରେଟେରୀ ବର୍ମାଙ୍କୁ ଭେଟିବା ଉଚିତ ଥିଲି । ବନ୍ଧୁ କହିଲେ, ଆଜ୍ଞା ମୁଁ ବାହାରର ଲୋକ । ଆପଣଙ୍କ ଅଫିସ୍‌ରେ ଯେ ବର୍ମା ଅଛନ୍ତି ମୁଁ ଜାଣେନାହିଁ । ଅଜ୍ଞାନତା ପାଇଁ ମାଫି ନାହିଁ । ଆଚ୍ଛା କୁହନ୍ତୁ କ'ଣ କାମ ଅଛି ? ବନ୍ଧୁ କହିଲେ, ମୋର କିଛି କାମ ନାହିଁ । ଆପଣ କେବେ ଆମଆଡ଼କୁ ଆସିଲେ ଆମେ ଉପକୃତ ହେବୁ । ମନ୍ତ୍ରୀ କହିଲେ, କିଓ ତମେ କ'ଣ ରାଜମାତର ଲୋକ ? ଏମିତି କିଏ କାହାକୁ ନିମନ୍ତ୍ରଣ କରେ ? ତମର ନିମନ୍ତ୍ରଣ କରିବା ଅଧିକାର ଅଛି ? ତମ ଉପରେ କିଏ ତଳେ କିଏ ? ଚିଠି ଲେଖିଛ ? ବନ୍ଧୁ କହିଲେ ଆଜ୍ଞା ହଁ । ଦେଢ଼ମାସ ତଳେ ଚିଠି ଆସିଛି । ପି.ଏ.ଙ୍କୁ ଡକାପଡ଼ିଲା । ଲେଖି ରଖ । ଦେଢ଼ମାସ ତଳର ଚିଠିରେ ଗତି କେଉଁଆଡ଼କୁ ? ଆଚ୍ଛା, ନମସ୍କାର । ମୁଁ ଚିଠି ଖୋଜି ବାହାର କରିବି । ବନ୍ଧୁ ଅପ୍ରତିଭ ନମସ୍କାର କରି ଉଠିଆସିଲେ । ସବୁ ମନ୍ତ୍ରୀ ଅବଶ୍ୟ ଏକପ୍ରକାର ନୁହନ୍ତି । ତେବେ କୌଣସି ମନ୍ତ୍ରୀଙ୍କଠାରୁ ଭବ୍ୟତା ଆଶା କରିବା ବିଡ଼ମ୍ବନା ।

ଏଇ ବନ୍ଧୁ ବଡ଼ ବ୍ୟସ୍ତ ଯେ ତାଙ୍କ ଭଲ କାମର ସ୍ୱୀକୃତି ନାହିଁ । ମୁଁ ଏକଥା ଜଣେ ଦିଲ୍ଲୀ ବନ୍ଧୁଙ୍କୁ ପଚାରିଲି । ସେ ମତେ ଓଲଟା ପଚାରିଲେ, ତମ ବନ୍ଧୁ ହାତଦେଖା ଜାଣନ୍ତି ? ସେ କେବେ କେଉଁ ମନ୍ତ୍ରୀଙ୍କ ପୁଅକୁ ଖେଳ ଶିଖେଇଛନ୍ତି କି ପଢ଼େଇଛନ୍ତି ? ସେ ପ୍ରଧାନମନ୍ତ୍ରୀଙ୍କ ଅଫିସରେ କାହାକୁ

ଜାଣନ୍ତି ? ତାଙ୍କର ସୁନ୍ଦରୀ ସ୍ତ୍ରୀ ଅଛନ୍ତି ? ସେ କୌଣସି ଆଦର୍ଶବାଦୀ ଗୋଷ୍ଠୀର ସଭ୍ୟ ? କଳା ସଂସ୍କୃତି କ୍ଷେତ୍ରରେ ତାଙ୍କର ସମାଗମ ଅଛି ? ତାଙ୍କୁ ନେଇଆଣି ଥୋଇଆସେ ? ଯଦି ଏସବୁ ଯୋଗ୍ୟତାରୁ କିଛି ନଥାଏ, ତେବେ 'ଉପରକୁ ଚଢ଼ିବାକୁ ଉଆଁ ଡେଇଁ ସାର । କିଛି ଲାଭନାହିଁ ।

କଥା ଅଛି, ଆମେ ପୂର୍ବଜଙ୍କ କାନ୍ଧରେ ଠିଆହୋଇ ବଡ଼ ହୋଇଛୁ । ଇଏ ଅଲଗା କଥା । ଏଥିରେ ପୂର୍ବଜଙ୍କ ସ୍ୱୀକୃତି ଅଛି । ଜ୍ଞାନର ସ୍ୱୀକୃତି ଅଛି । ସାମାଜିକ ଶିଡ଼ିରେ ଚଢ଼ିବାରେ ଏ ଉଭୟର ଅସ୍ୱୀକାର ପ୍ରଥମ କଥା । ଯେଉଁ ଶିଢ଼ିରେ ଚଢ଼ିବ ତାକୁ ଆଗେ ଗୋଇଠା ମାରି ତଳକୁ ଖସେଇବାକୁ ହେବ । ଯେମିତି ଆଉ କେହି ଉପରକୁ ନ ଚଢ଼ନ୍ତି । ଦିଲ୍ଲୀର ଜଣେ ବାନ୍ଧବୀ କହିଲେ, ମୋ ନାଁ ଜଏଣ୍ଟ ସେକ୍ରେଟାରୀ ପାନେଲରେ ଉଠିଛି । ହେଲେ ମତେ ଜାଗା ମିଳୁନାଇଁ । ମୁଁ ଆଇ. ଏ. ଏସ୍. ନୁହେଁ । ମୁଁ ଆକାଉଣ୍ଟ ସର୍ଭିସର ଲୋକ ନୁହେଁ । ଉଭୟ ପ୍ରକାର କାମ କରି ବାହାବା ହାସଲ କଲେ ସୁଦ୍ଧା ଯୁଆଡ଼କୁ ଗୁହିଁଲେ ଦୁଆର ବନ୍ଦ । ମୋ ଉପରେ ଚଢ଼ି କେତେ ଲୋକ ଉପରକୁ ଉଠିଲେଣି ।

ଆଜି ଦେଶରେ ସଭିଏଁ ଡାକ ପକେଇଛନ୍ତି 'ଆମେ ପଛୁଆ' । କର୍ଣ୍ଣାଟକରେ ଖାଲି ଓ୍ୱକଲିଗା ଓ ଲିଙ୍ଗାୟତ ନୁହନ୍ତି, ବାହ୍ମଣମାନେ ମଧ୍ୟ ନିଜକୁ ପଛୁଆ ବୋଲି ଦାବି କରୁଛନ୍ତି । କର୍ଣ୍ଣାଟକ ପଛୁଆ କି ଗୁଜୁରାଟ ପଛୁଆ, ଆନ୍ଧ୍ର ପଛୁଆ କି ଓଡ଼ିଶା ପଛୁଆ ଏ ବିଷୟରେ ମଧ୍ୟ ପ୍ରତିଯୋଗିତା ଚାଲିଛି । ଏଥିରେ ଯଦି ଦିଲ୍ଲୀ ଅନ୍ୟମାନଙ୍କ ଉପରେ ଚଢ଼ି ଆଗେଇଯାଏ କିମ୍ବା ଅଳ୍ପ ସଂଖ୍ୟକ ଚତୁର ଲୋକ ବେଶୀ ଲୋକଙ୍କ ଉପରେ ଚଢ଼ି ଉପରକୁ ଉଠନ୍ତି ତେବେ ଆମେ କେବଳ ଆପଣାକୁ ନିନ୍ଦିବା ସିନା । ଆପଣା ସୁନା ତ ଭେଣ୍ଡି, ଅପର ସାଙ୍ଗରେ କାହିଁକି ଚୁଟି ଧରାଧରି ?



# କଳା ମଙ୍ଗଳବାର

କାଳର ରଙ୍ଗ ନଥାଏ । ତେବେ ଗୋଟିଏ ଗୋଟିଏ ଘଟଣା ଆପଣା ରଙ୍ଗରେ ସମୟକୁ ରଙ୍ଗେଇଦିଏ । କୌଣସି ଏକ ଅଜଣା ଆତତାୟୀ ରାଜୀବ ଗାନ୍ଧିଙ୍କୁ ହତ୍ୟା କରିବାରେ ଖାଲି ଯେ ଭାରତୀୟଙ୍କ ମୁହଁରେ କଳା ବୋଳି ହୋଇଗଲା ନୁହେଁ । ସେଇ ରାତିର କଳା ଯେମିତି ଆହୁରି କଳା ହୋଇ ଆମ ଭାରତୀୟତ୍ୱ ଉପରେ ଛାଇଗଲା । ଆମେ ସମସ୍ତେ ଦୁନିଆ ଆଖିରେ ହତଆଶ ହୋଇଗଲେ । ଅହିଂସାର ପୂଜାରୀ ଗାନ୍ଧିଙ୍କୁ ଗୁଳିମାରି ଯେଉଁ ହିଂସାତ୍ମକ ରାଜନୀତିର ଅୟମାରମ୍ଭ ହୋଇଗଲା, ସବୁ ରାଜନୈତିକ ଦଳ ପଛାରେ ବାନ୍ଧି ସେଇ ନିଆଁକୁ ଜଳେଇ ରଖିବାର ପରିଣାମ ଯେ ଏପରି ଭୟାବହ ହେବ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ତେବେ ରାଜୀବ ଗାନ୍ଧିଙ୍କ ମୃତ୍ୟୁ ଆମ ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଦେଇଛି । ଶାନ୍ତି, ପ୍ରେମ, ଅହିଂସାର ଏଇ ଦେଶ ଯେଉଁଠି ଶତାବ୍ଦୀନାୟକମାନେ ବିଶ୍ୱମାନବିକତାର ଡାକ ଦେଇ-ଆସିଛନ୍ତି ସେହି ଦେଶରେ ଏହା କିପରି ସମ୍ଭବ ହୁଏ ?

ପଞ୍ଜାବ, ଆସାମର ଉଗ୍ରବାଦୀ ହୁଅନ୍ତୁ, ବିଶ୍ୱହିନ୍ଦୁ ପରିଷଦର ଅସହଣି ହିନ୍ଦୁତ୍ୱ ହେଉ, ନକସାଲ କିମ୍ବା ଏଲ.ଟି.ଟି.ଇ.ଙ୍କର ଲଢୁଆ ଆହ୍ୱାନ ହେଉ, ମଣିଷକୁ ମାରି ସମସ୍ୟାର ସମାଧାନ ଖୋଜିବା ଖାଲି ଭାରତୀୟତ୍ୱ ପ୍ରତି ଅପମାନ ନୁହେଁ, ମଣିଷପଣିଆର ଅପମାନ । ବହୁତ ମଣିଷ ମାରିସାରିଲା ପରେ ଚଣ୍ଡାଶୋକ ଏଇ ଭୂଇଁରେ ଧର୍ମାଶୋକ ହୋଇଥିଲେ । ଶାନ୍ତି, ମୈତ୍ରୀ ଓ ଭ୍ରାତୃତ୍ୱ ଭାବନା ଏଇ ଦେଶରୁ ସମସ୍ତ ଏସିଆକୁ ବ୍ୟାପିଯାଇଥିଲା । ଏବେବି ବିକାଶଶୀଳ ଦେଶର ନେତୃତ୍ୱର ଆଧାର ଆମର ଏଇ ପରମ୍ପରା ଉପରେ ଆଧାରିତ ନୀତି । ଆମେ ଯେଉଁମାନେ ପୁଞ୍ଜିବାଦ ଆଉ ଏକଛତ୍ରବାଦ ବିରୁଦ୍ଧରେ ଲଢ଼ିଆସିଲୁ ସେମାନେ ବ୍ୟକ୍ତି ନୁହେଁ ନୀତି ବିରୁଦ୍ଧରେ ଲଢ଼ିଲୁ । ଆଜି ଜୀବନର ଶେଷ ଅଧ୍ୟାୟରେ ବିଗୃହର ବିଷକୁ ରାଜନୀତି ଶରୀରରୁ ବାହାର କରିବାରେ ବିଫଳ ଲୋକେ ବ୍ୟକ୍ତି ହତ୍ୟାର ଆଶ୍ରୟ ନେଇଥିବାର ଦେଖିଲେ

ମଣିଷ ଉପରେ ଆସ୍ଥା କମିଯାଉଛି ।

ରାଜୀବ ଗାନ୍ଧିଙ୍କର ରାଜନୈତିକ ଚିନ୍ତା ଆଉ ସେଇ ଚିନ୍ତାର ରୂପାୟନ ବିରୁଦ୍ଧରେ କାହାରି କାହାରି ବିରୋଧ ରହିବା ସ୍ୱାଭାବିକ । ଏଥିପାଇଁ ଜନଚେତନା ଜାଗ୍ରତି ଓ ଜନ ଆନ୍ଦୋଳନ ଜରିଆରେ କାମକଲେ ଯାଇଁ ଗଣତନ୍ତ୍ରର ସାର୍ଥକତା । ଦୁଃଖର କଥା, ଆଜି ଦେଶର ଲୋକଙ୍କ ନାଁରେ ସବୁ ରାଜନୈତିକ ଦଳ ଶପଥ ନେଉଥିଲେ ସୁଦ୍ଧା ସିଧାସଳଖ ଲୋକସମ୍ପର୍କ କାହାରି ନାହିଁ । ସଭିଏଁ ମଧ୍ୟସ୍ଥ-ନିର୍ଭର । କର୍ମୀମାନେ ଡିଲର, କଣ୍ଟ୍ରାକ୍ଟର କିମ୍ବା କିଛି ନା କିଛି ମଧ୍ୟବର୍ତ୍ତୀ ସୁବିଧାଭୋଗୀ । ବିନା ପଇସାରେ ସାମାଜିକ ଉନ୍ନତି ପାଇଁ କାମକରିବା ଆଜି ଲୋକଙ୍କରେ ହରିନାମ । ବ୍ୟକ୍ତିଗତ ସୁବିଧା ଭୋଗନ୍ତି ଇଲାକା ଉପରେ ଅଧିକାର, ମୋ ଇଲାକାରେ ମୋ ବିନାନୁମତିରେ ଆଉ କାହାରି ପ୍ରବେଶ ନିଷେଧ, ଯୁ'ତ ଗଣତନ୍ତ୍ରର ପ୍ରଥମ ଶତ୍ରୁ । ଯେଉଁଠି ବିଚାର ମନ୍ଥନ ବଦଳରେ କୁଳନେତାଙ୍କ ବିଚାର ବେଦର ଗାର ହୋଇଯାଏ ସେଇଠି ପ୍ରଥମ ହିଂସାର ମଞ୍ଜି ପୋତା ହେଲା । ପରସ୍ପର ଅସହିଷ୍ଣୁ-ତାଆର ଶିକାର ଯେ ବ୍ୟକ୍ତି ହେବ ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ?

ରାଜୀବ ଗାନ୍ଧିଙ୍କର ଦୋଷ ତ ଅନେକ । ତେବେ ଯେଉଁମାନେ ବନ୍ଧୁକ ଧରି ଲୋକଙ୍କ ପ୍ରତିନିଧିତ୍ୱ କରିବାକୁ ଚାହାଁନ୍ତି ସେମାନଙ୍କ ବାଟଠାରୁ ତାଙ୍କ ବାଟ ଭିନ୍ନ । ସେଇଥିପାଇଁ ଲୋକଙ୍କ ଆଡ଼କୁ ହାତ ବଢ଼େଇଲାବେଳେ ବୋମା ବନ୍ଧୁକରେ ବିଶ୍ୱାସ କରୁଥିବା ଆତତାୟୀର ଗୁଳି ତାଙ୍କ ହାତ ଲୋକଙ୍କ ହାତରେ ପହଞ୍ଚେଇ ଦେଲାନାହିଁ । ଛୟାଳିଶ ବର୍ଷର ଯୁବକ ସଂସାରର ସବୁ ହସଖୁସି ଗୁଡ଼ିକ ମୁହୂର୍ତ୍ତକରେ ଜୀବନ ସେପାଖକୁ ଚାଲିଗଲା । କେତେ ଯେ ଯୁବକ, ଶିଶୁ, ସ୍ତ୍ରୀ, ପୁରୁଷ ଆଜି ଅଜଣା ଆତତାୟୀ ହାତରେ ମରୁଛନ୍ତି, ତା'ର ଗଣନା ନାହିଁ । ଆମ ରେଡ଼ିଓ, ଟେଲିଭିଜନ ଓ ଖବରକାଗଜ ରିପୋର୍ଟରେ ସେମାନେ ମଣିଷ ନୁହଁନ୍ତି, ସଂଖ୍ୟା । ଏଇସବୁ ଗୁପ୍ତ ଓ ପ୍ରକାଶ୍ୟ ହତ୍ୟା ବିରୁଦ୍ଧରେ ସ୍ୱର ଉଠେଇବାକୁ ଆମେ ଭୁଲିଗଲୁଣି । ଆମ ବ୍ୟକ୍ତିଗତ ସ୍ୱାର୍ଥ, ସାନ ସାନ ଡର ଆମକୁ ସମ୍ପୂର୍ଣ୍ଣ ବିବଶ କରିଦେଇଛି ।

କ୍ୟାଲେଣ୍ଡରରେ କେତେ ମଙ୍ଗଳବାର ଯିବ ଆଉ ଆସିବ । କିନ୍ତୁ ମାତୃହତ୍ୟା କରି ପରଶୁରାମ ଆପଣା ହାତରୁ ମାତୃରକ୍ତ ଧୋଇବାରେ ଅସଫଳ ହେଲପରି ମେ ମାସର ଏଇ ମଙ୍ଗଳବାରର କଳା ଆମ, ଆତ୍ମାରୁ ଧୋଇହେବ-ନାହିଁ । ସେଥିପାଇଁ ଏ ଜାତିକୁ ପ୍ରାୟଶ୍ଚିତ୍ତ କରିବାକୁ ହେବ । ଦଣ୍ଡବିଧି ସମ୍ମତ ରାଜନୀତିର ଆତ୍ମୀୟତାକୁ ଭାଙ୍ଗିବାକୁ ହେବ । ବ୍ୟକ୍ତି ନୁହେଁ ବର୍ଗର ବିରୁଦ୍ଧରେ ଲଢ଼େଇ ଜାରି ରଖିବାକୁ ହେବ । ଏଇ ଲଢ଼େଇର କ୍ଷେତ୍ର ହେବ ମଣିଷର ମନ ଆଉ ହୃଦୟ । ତା'ହାହେଲେ ଅବା ଏଇ ମଙ୍ଗଳବାରର କାଳି କିଛି ପରିମାଣରେ ଧୋଇହେବ ।



# ଗାନ୍ଧି ଚିନ୍ତା

ଗାନ୍ଧି ଭାରତୀୟ ବ୍ୟକ୍ତି ଚେତନାର ଏକ ଅଂଶ । ଖାଲି ମଣିଷ କହି ଯେମିତି ତାଙ୍କୁ ଉଡ଼େଇ ଦେଇହେବନାହିଁ, ଦେବତା କହି ମଧ୍ୟ ତାଙ୍କୁ ଖଟୁଳିରେ ଦୂରେଇ ରଖିଦେଇହେବନାହିଁ । ମୂଲ୍ୟବାନ୍ କହି ତାଙ୍କୁ ଯେମିତି ପେଡ଼ିରେ ବାନ୍ଧି ସାଇତି ରଖାଯାଇପାରିବନାହିଁ, ମୂଲ୍ୟହୀନ୍ କହି ସେମିତି ଅଳିଆଗଦାକୁ ଫୋପାଡ଼ି ଦିଆଯାଇ ପାରିବନାହିଁ । ଆମର ଦିନରେ, ଗତ କୋଡ଼ିଏ ବର୍ଷ ଭିତରେ ଏଇଭଳି ସବୁ ପ୍ରକାର ଚେଷ୍ଟା ହୋଇଛି । କିନ୍ତୁ ସବୁ ଦ୍ୱନ୍ଦ୍ୱକୁ ନିରସ୍ତ କରି ଗାନ୍ଧି ଜୀବନ ଓ ଦର୍ଶନ, କଥା ଓ ଲେଖା ଭାରତୀୟ ଚିନ୍ତାଶୀଳ ମନକୁ ଆକର୍ଷଣ କରିଆସିଛି ।

ଗାନ୍ଧିଙ୍କୁ କେବଳ ଭାରତୀୟ କହି ସୀମାବଦ୍ଧ କରି ଦିଆଯାଇ ପାରିବନାହିଁ; ସେ ମଧ୍ୟ ଏକ ବୃହତ୍ତର ଚେତନାର ପରିପ୍ରକାଶ । ରୁଷିଆର ଟଲଷ୍ଟୟ, ଆମେରିକାର ମାର୍ଟିନ ଲୁଥର କିଂଗ କିମ୍ବା ଆଫ୍ରିକାରେ ସ୍ୱାଇତ୍‌ଜରଙ୍କ ସହିତ ଗାନ୍ଧିଙ୍କୁ ଏକା ପର୍ଯ୍ୟାୟରେ ବିଚାର କରାଯାଇପାରେ । କେବଳ ଶ୍ରେଣୀ-ସଂଘର୍ଷରେ ବିଶ୍ୱାସ କରୁଥିବା ଲୋକଙ୍କ 'ସବ୍ବ ଲୋକମ ହିତ'-ବିଶ୍ୱାସୀ ଗାନ୍ଧିଙ୍କୁ ଯଥାର୍ଥଭାବେ ଅବଧାରଣା କରିପାରିବା ସ୍ୱାଭାବିକ ।

ଆମେରିକାର ଜଣେ ପ୍ରମୁଖ ଧର୍ମଯାଜକ ଉଇଲିଆମ ସ୍ଲୋଆନ କଫିନ ଆଇନ ଭଙ୍ଗ ବିଷୟରେ ତାଙ୍କ ମତ ଦେବାକୁ ଯାଇ କହିଥିଲେ, "ପୃଥିବୀରେ କାହାରି ଆଇନ ଭଙ୍ଗ କରିବାର ଅଧିକାର ନାହିଁ । କିନ୍ତୁ ବେଳେବେଳେ ମଣିଷ ଏପରି ଅବସ୍ଥାର ସମ୍ମୁଖୀନ ହୁଏ, ଯେଉଁଠି ଆଇନ ଭାଙ୍ଗିବା ତା'ର କର୍ତ୍ତବ୍ୟ ବୋଲି ସେ ମନେକରେ ।" ମୋ ମତରେ ଗାନ୍ଧି ପରମ୍ପରାର ଏହା ଅନ୍ୟତର ସୂକ୍ଷ୍ମ ପରିପ୍ରକାଶ । ଗାନ୍ଧି ତାଙ୍କ ଜୀବନକାଳ ଭିତରେ ଭାରତରେ ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ ପାଇଁ କର୍ତ୍ତବ୍ୟବୋଧ ଜଗାଇବା ପାଇଁ ସାଧନା କରିଯାଇଛନ୍ତି । ଆଜିର ଅଧିକାର ଛଡ଼ାଛଡ଼ି ଭିତରେ ଗାନ୍ଧି ଚିନ୍ତା ନିଷ୍ପ୍ରଭ ଓ କର୍ତ୍ତବ୍ୟଜ୍ଞାନ ମ୍ଳାନ ।

ଗାନ୍ଧିଙ୍କର ସମସ୍ୟାନୁବର୍ତ୍ତିତା ବିଷୟରେ ତ ବହୁତ ନଜିର ରହିଛି । କିନ୍ତୁ ସ୍ୱରାଜ ଓ ସାମାଜିକ ନ୍ୟାୟ ପ୍ରତିଷ୍ଠା ବାଟରେ ସେ ଯେପରି ସମସ୍ୟାବନ୍ଧ କାର୍ଯ୍ୟକ୍ରମ ରଖିବାରେ ଆଗ୍ରହୀ ଥିଲେ ସେକଥା ଆମେ ଅତି ସହଜରେ ଭୁଲି-ଯାଇଛୁ । ୧୯୨୧, ୧୯୩୦ ଓ ୧୯୪୨ ଆନ୍ଦୋଳନକୁ ଏକାଠି ଦେଖିଲେ, କଥଟି ଆଉ ଟିକିଏ ସୁସ୍ପଷ୍ଟ ହେବ । 'ସ୍ୱରାଜ୍ୟ ଆପଣା ଚେଷ୍ଟାରେ ପାଇବା ସମ୍ଭବ', 'ସ୍ୱରାଜ୍ୟ ହାତପାହାନ୍ତାରେ' ଓ 'ଇଂରେଜ ସରକାର ତୁରନ୍ତ ଘରଚଳିଯାଅ' ସ୍ଲୋଗାନ ଭିତରେ ଏହାର ପରିଣାମ ସହଜେ ଲକ୍ଷ୍ୟ । ଆଜି ପୃଥିବୀର ବୈଜ୍ଞାନିକ ପ୍ରଗତି ଭିତରେ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ଆମର ମନଇଚ୍ଛା ସମୟ ନାହିଁ । ତଥାପି ଆଜିକି ୩୦/୪୦ ବର୍ଷ ତଳେ ଗାନ୍ଧି ଯାହା କରିପାରିଥିଲେ ଆମର ଆଧୁନିକ ବିପ୍ଳବୀ ବାମପନ୍ଥୀ, ଉଗ୍ର ବାମପନ୍ଥୀ ଓ ଅତ୍ୟୁଗ୍ର ବାମପନ୍ଥୀମାନେ ତା ସ୍ପଷ୍ଟଭାବରେ ଦେଖି ମଧ୍ୟ ପାରୁନାହାନ୍ତି ।

ବ୍ୟକ୍ତି ଜୀବନରେ ଗାନ୍ଧି ସନ୍ଥ ଥିଲେ, ରାଜନୈତିକ ଜୀବନରେ ସେ ଥିଲେ ରାଜର୍ଷି । ଗାନ୍ଧି ଗଣଚେତନା ଓ ଗଣତନ୍ତ୍ରରେ ବିଶ୍ୱାସୀ ଥିଲେ । ଆଜିକାର ତଥାକଥିତ ବିପ୍ଳବୀମାନେ ଦଳତନ୍ତ୍ର ଓ ଗୋଷ୍ଠୀତନ୍ତ୍ର ଭିତରେ ବନ୍ଧା । ଗଣ କେବଳ ଉପଲକ୍ଷ ମାତ୍ର । ଗାନ୍ଧି ମଣିଷ ଜୀବନକୁ ଯେଉଁ ସମ୍ବେଦ, ସମ୍ବେଦନଶୀଳ ମନନେଇ ଦେଖିଥିଲେ, ତା' ତାଙ୍କୁ ବହୁତ ଉଚ୍ଚକୋଟୀକୁ ଉଠେଇ ନେଇଥିଲା । ତଥାପି ଲଙ୍ଗଳା ଫକିର, ଭାରତୀୟ ଜନଗଣ ସହିତ ଏକାତ୍ମ ହୋଇ ଭାରତୀୟ ଗୃହିଣୀ ଓ ଚଳଣି, ଚିନ୍ତା ଓ କାର୍ଯ୍ୟ, ବିପ୍ଳବ, ଧ୍ୱଂସ ଓ ନିର୍ମାଣ ସବୁର ମୁଖପାତ୍ର ରୂପେ ଦେଖାଦେଇଥିଲେ ।

ଆଜି ଭାରତର ଘୋର ଦୁର୍ଦ୍ଦିନ । ଭାରତୀୟ ଲୋକେ କେବଳ 'ଆଶା' ଓ 'ଦାବି' ସେଇନ ପ୍ରମତ୍ତ । ଏଠି କର୍ତ୍ତବ୍ୟ କିମ୍ବା ନିଷ୍ଠା ନାହିଁ । ଗାନ୍ଧି କହିଥିଲେ, 'ଯେଉଁ ଲୋକ ସାଧୁ ଉପାୟରେ ଉପାର୍ଜନ କରିବାକୁ ଚେଷ୍ଟା କରିବ, ତା'ପକ୍ଷରେ କୌଣସି ଶ୍ରମ ହୀନ ବା ତୁଚ୍ଛ ନୁହେଁ' । ଆଜି ବିନାଶ୍ରମରେ, ଅଳ୍ପ ସମୟରେ ବଡ଼ଲୋକ ହେବାପାଇଁ ଯେଉଁ ପ୍ରତିଯୋଗିତା ଚାଲିଛି ତା'ଭିତରେ ଗାନ୍ଧି ବିଚାର ପାଇଁ ସ୍ଥାନ କାହିଁ ?

ଗାନ୍ଧିବାଦ ଆଜିର 'ଫେସନ' ନୁହେଁ । ଅନେକେ ଅବଶ୍ୟ ଗାନ୍ଧିବାଦର ମୁଖା ପିନ୍ଧିଛନ୍ତି; କିନ୍ତୁ ଯେଉଁ ଚରିତ୍ରନିଷ୍ଠା ଥିଲେ ମୁଖଶ୍ରୀ ଝଲକି ଉଠନ୍ତା, ତା' ସେମାନଙ୍କଠି ନାହିଁ । ତେଣୁ ମୁଖା ଓ ମୁଖଶ୍ରୀ ଭିତରେ ଥିବା ଫରକ ଠିକିକି ମଧ୍ୟ ସେମାନେ ବୁଝିପାରୁନାହାନ୍ତି । ଏପରି ଅବସ୍ଥା ଭିତରେ ଆମର ପ୍ରଚେଷ୍ଟା କ'ଣ ଗାନ୍ଧି ଚିନ୍ତା ପ୍ରତି ଯୁବସମାଜର ଭିତରେ, ବୁଦ୍ଧିଦୀପ୍ତ ବିଗ୍ଭରବୋଧ ଜାଗ୍ରତ କରି କର୍ତ୍ତବ୍ୟ ଓ ଦାୟିତ୍ୱବୋଧ ବଢ଼ାଇବ ?

କିଛିଦିନ ତଳେ ବିଶିଷ୍ଟ ବ୍ୟଙ୍ଗଚିତ୍ରକାର ଆର୍.କେ. ଲକ୍ଷ୍ମଣ ଏକ ଛବି ପ୍ରକାଶ କରିଛନ୍ତି । ଗାନ୍ଧିଙ୍କ ଫଟୋକୁ ଦେଖେଇ ଦୁ'ଜଣ ଯୁବକଙ୍କ ଭିତରୁ ଜଣେ କହୁଚି ବେନ କିଙ୍ଗସଲିଙ୍କୁ ଦେଖ । କି ଚମତ୍କାର ଅଭିନୟ । ଆଜିର ପିଲାଏ ବେନ କିଙ୍ଗସଲିଙ୍କ ଅଭିନୟରୁ ଗାନ୍ଧିଙ୍କୁ ଆବିଷ୍କାର କରୁଛନ୍ତି । ଟେଲିଭିଜନ ଦେଶରେ ଯେଉଁ ନୂଆ ନିରପେକ୍ଷତା ସୃଷ୍ଟି କରୁଚି ଅନ୍ତତଃ ଗାନ୍ଧିଙ୍କି ଚିହ୍ନେଇବା ତା'ର କାଣିଚାଏ ପ୍ରାୟଶ୍ଚିତ୍ତ ।

ଆଜି ଚାରିଆଡ଼େ ପ୍ରଗତି ପ୍ରଗତି ହୁରିପଡ଼ିଚି । କିନ୍ତୁ ଏଇ ପ୍ରଗତିର ହେତୁ ଓ ପ୍ରକୃତି କ'ଣ ସେ ବିଷୟରେ ବିଗ୍ଭରିବାକୁ କାହାରି ବେଳନାହିଁ । ଗାନ୍ଧି ପୃଥିବୀରେ ଏକ ନୂଆ ଚହଲ ପକେଇଦେଇଥିଲେ ପୋଷାକକୁ ରାଜନୈତିକ ପ୍ରତିବାଦର ପ୍ରତୀକ କରି । ଭାରତୀୟ ଜନସାଧାରଣଙ୍କୁ ପିନ୍ଧିବା ଲୁଗାର ଅକୁଳାନ ହେତୁ ସେ ଆଣ୍ଠୁଲୁଚ୍ଚି ଖଦି ପିନ୍ଧିଲେ । ତାଙ୍କୁ ଚର୍ଚ୍ଚିଲ ଲଙ୍ଗଳା ଫକିର ଆଖ୍ୟାଦେଲେ । ଆମ ଆଧୁନିକମାନେ ତାଙ୍କୁ ପ୍ରଗତି ବୋଲି ମାନିବାକୁ ଅନିଚ୍ଛୁକ । ଅଥଚ ହିପିମାନଙ୍କର ମଇଳା ପୋଷାକ ପିନ୍ଧା, ଆମେରିକା ଝିଅଙ୍କ ବଡ଼ିସ ନପିନ୍ଧିବା ବିପ୍ଳବ ବୋଲି ଏମାନେ ଭେଉଁଛନ୍ତି ।

ପରମ୍ପରା ସହିତ ସମ୍ବନ୍ଧ ନଥିବା ବିକାଶ ଯେ ପ୍ରଗତି ନୁହେଁ ଏ କଥା ଜାଣିରଖିବା ଏକାନ୍ତ ପ୍ରୟୋଜନ । ଯେଉଁମାନେ ପଶ୍ଚିମୀ ଜୀବନମାନ ଢାଞ୍ଚରେ ଗତି କରିବାକୁ ପ୍ରଗତି ବୋଲି ବିଗ୍ଭରୁଛନ୍ତି ସେମାନେ ଦିବାସ୍ୱପ୍ନ ଦେଖୁଛନ୍ତି । ଏପରି ଜୀବନମାନ ସାମ୍ରାଜ୍ୟବାଦୀ ଶୋଷଣ ଉପରେ ପ୍ରତିଷ୍ଠିତ । ସେୟାକୁ ବଞ୍ଚେଇ ରଖିବାର ସାମର୍ଥ୍ୟ ପଶ୍ଚିମୀ ଦେଶମାନଙ୍କର ନାହିଁ । ଆମର ତ ଦୂରର କଥା ।

ମାର୍କସଙ୍କର ପୂର୍ବ ବିଷୟରେ ଧାରଣା ସୀମିତ ଥିଲା । ସେ ଗ୍ରାମ୍ୟ ସମାଜ ବିକାଶର ପରିପନ୍ଥୀ ବୋଲି କହିଛନ୍ତି । ଗାନ୍ଧି ବିଶ୍ବର ଗ୍ରାମକୈନ୍ଦ୍ରିକ । ଆଜି ଉଭୟଙ୍କୁ ଗାନ୍ଧି ଓ ମାର୍କସଙ୍କର ବୈଜ୍ଞାନିକ ବିଶ୍ଳେଷଣ କରି ଯାହା ଆମର ଉପଯୋଗୀ ତାକୁ ରଖି ଅଦରକାରୀ ଜିନିଷ ଫୋପାଡ଼ିଦେବା ବେଳ ଆସିଛି । ଗାନ୍ଧି ଚିନ୍ତା ଯେ ଏଇ ବିଶ୍ବରର ଭିତ୍ତି ହେବା ଦରକାର ଏକଥା ଅଧିକ ବୁଝେଇ କହିବା ଦରକାର ନାହିଁ ।

